**SPASTAKATHA**
*by Dr. Kamalakanta Kar*
*Publishers: Vidyapuri, Cuttack 753002*

ISBN: 81-7411-102-6

ପ୍ରଥମ ପ୍ରକାଶ ଫେବ୍ରୁୟାରୀ ୧୯୯୫

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ଗୋସ୍ୱାମୀ ପ୍ରେସ୍
ବ୍ରହ୍ମେଶ୍ୱରପାଟଣା, ଭୁବନେଶ୍ୱର ୭୫୧୦୦୨

ମୂଲ୍ୟ ଟ ୩୦.୦୦

*Digitized by srujanika@gmail.com*

## ॥ ଉତ୍ସର୍ଗ ॥

ସଦାସର୍ବଦା ଆଦର୍ଶର ବାଣୀ ଶୁଣାଇ
ମୋ'ଠାରୁ କୌଣସି ପ୍ରତ୍ୟାଶା ନ ରଖି
ନିଜ ଭିଟାମାଟିକୁ ଜଗି ବସିଥିବା
ମୋର ପରମ ପୂଜ୍ୟ
'ବାପା-ମା'ଙ୍କ
ପବିତ୍ର ଚରଣ ତଳେ ।

Digitized by srujanika@gmail.com

# ଅଭିମତ

ଆଧୁନିକ ଓଡ଼ିଶାର ରୂପ ଓ ଚରିତ୍ରରେ ପରିବର୍ତ୍ତନ ଘଟିଛି । ଓଡ଼ିଆର ଅନ୍ତଃସ୍ୱର, ବୌଦ୍ଧିକ ଚେତନା ଅନୁଭବର ଦିଗନ୍ତ ମଧ୍ୟ ପ୍ରସାରିତ ହୋଇଛି । ଜୀବନର ବର୍ଣ୍ଣାଢ଼୍ୟ ରୂପ ଯେପରି ଝଲସି ଉଠିଛି ସେହିପରି ଜୀବନ ଯନ୍ତ୍ରଣା ମଧ୍ୟ ପ୍ରକଟିତ ହୋଇଛି । ବୈଚିତ୍ର୍ୟମୟ ଜୀବନ କାହାଣୀ କେତେବେଳେ ପରମ୍ପରା ଭିତରେ ବନ୍ଦି ହୋଇ ପଡ଼ିଛି ତ ଆଉ କେତେବେଳେ ସେଥିରୁ ନିଷ୍କୃତି ପାଇବାର ପଥ ସନ୍ଧାନ କରିବାରେ ମାତିଛି । ଗଳ୍ପ ମଣିଷମାନଙ୍କର କଥା କହେ ବୋଲି ସେ ସବୁର ଛବିଛି ଆଭାସ ଫୁଟି ଉଠିଛି ଡାକ୍ତର କମଳାକାନ୍ତ କରଙ୍କ କାହାଣୀମାନଙ୍କରେ ।

ଡାକ୍ତର କର ଜଣେ ଖ୍ୟାତିମାନ ଚିକିତ୍ସକ । ସେ ପ୍ରତିଦିନ ବହୁ ଲୋକଙ୍କ ସଂପର୍କରେ ଆସନ୍ତି । ସେଥିପାଇଁ ସେ ବହୁ ଅଭିନବ ଅଭିଜ୍ଞତାର ଅଧିକାରୀ । ଗତ ଚାରି ପାଞ୍ଚବର୍ଷ ହେବ ସେ ଗଳ୍ପ ଲେଖିବା ଆରମ୍ଭ କରି ଏ ମଧ୍ୟରେ ଯେଉଁସବୁ ରଚନା ବିଭିନ୍ନ ସାହିତ୍ୟ ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଛି ସେ ସବୁକୁ ଏଇ ପୁସ୍ତକରେ ସନ୍ନିବେଶିତ କରିବା ଦ୍ୱାରା ସେ କେବଳ ପାଠକମାନଙ୍କୁ ଏକ ନୂତନ ଗଳ୍ପ ପୁସ୍ତକ ଉପହାର ଦେଇ ନାହାନ୍ତି, ଜୀବନର ତିକ୍ତ ମଧୁର କାହାଣୀକୁ ସାର୍ବଜନୀନ କରିବାରେ ସହାୟକ ହୋଇଛନ୍ତି ।

ସାହିତ୍ୟର ଭୂମି ବଡ଼ ବ୍ୟାପକ ଓ ବିସ୍ତୃତ । ଏହା ଆକାଶପରି ଅନନ୍ତ ଓ ମହିମାଦୀପ୍ତ । ଯେ କୌଣସି ସୃଜନଶୀଳ ମନ ଏପରି ଏକ ମାଧ୍ୟମକୁ ପରିହାର ନ କରି ନିଜକୁ ଅଭିବ୍ୟକ୍ତ କରିବାକୁ ପ୍ରୟାସୀ ହେବା ସ୍ୱାଭାବିକ । ଏହି ସଂକଳନରେ ସ୍ଥାନ ପାଇଥିବା ଗଳ୍ପ 'ସ୍ୱପ୍ନକଥା'ରେ ରମଣୀରଞ୍ଜନଙ୍କୁ କୁହାଯାଇଛି—''ସମାଜ ଭିତରେ ସେକ୍ସକୁ ଛାଡ଼ି ଆଉ ଯେତେ କୁସଂସ୍କାର, ଅପସଂସ୍କୃତି ଏବଂ ସାମାଜିକ ଦୁର୍ନୀତି ଭର୍ତ୍ତି ହୋଇ ରହିଛି *** ତାକୁ ନେଇ କଣ ସୁନ୍ଦର ଆଖ୍ୟାୟିକା ରଚନାରେ ତୁମେ ଆନନ୍ଦ ପାଇ ପାରିବ ନାହିଁ ? *** ନିଛକ ସତ କଥାକୁ ନିପଟ ମିଥ୍ୟାବାଦୀ ମଧ୍ୟ ପ୍ରଶଂସା କରିଥାଏ । ତେଣୁ ତୁମେ ତାହାରି ଉପରେ ସାହିତ୍ୟ ସୃଷ୍ଟି କଲେ ଆଦର ପାଇବ ନାହିଁ ବୋଲି କାହିଁକି ଭାବୁଛ ? *** ଏ ଧରଣର ଲେଖା ଆମର କୋମଳମତି କିଶୋର କିଶୋରୀଙ୍କ

Digitized by srujanika@gmail.com

ମନ ଉପ୍ରରେ କି ପ୍ରଭାବ ପକାଉଛି ? ତୁମଠାରେ ଲେଖିବାର ଐଶୀଶକ୍ତି ଅଛି । ତା'ର ସଦୁପଯୋଗ କରୁନାହଁ କାହିଁକି ?'' ଡାକ୍ତର କରଙ୍କ ଏଇ ବାଣୀ ତାଙ୍କ କାହାଣୀ ସବୁରେ ବିଭିନ୍ନ ଭାବେ ଝଙ୍କୃତ ହୋଇଛି ।

'ପ୍ରତିକ୍ରିୟା' ଗଳ୍ପରେ ଅହଙ୍କାରୀ ମଣିଷର କଥା ଯେପରି ଉଲ୍ଲେଖ କରାଯାଇଛି, ସେହିପରି 'ଆବର୍ତ୍ତନ' ଗଳ୍ପରେ ସମାଜ ସଂସ୍କାର ଓ ଜାତିପ୍ରଥା ବିରୁଦ୍ଧରେ ସ୍ପଷ୍ଟ ସୂଚନା ଦିଆଯାଇଛି । ଲେଖକଙ୍କ ଭାଷାରେ—''ପବନ ଉଜାଣି ବହିଲାଣି । ଯେଉଁ 'ଜାତିର ବାଡ଼', ଏ ଗାଁର ପିଲାଏ ଭାଙ୍ଗିଥିଲେ, ତାଙ୍କରି ପିଲାଏ ଏବେ ସରକାରୀ କୃତ ନୂତନ ରିଇନ୍‌ଫୋର୍ସଡ୍ କଂକ୍ରିଟ ବାଡ଼ ଦ୍ୱାରା ତାଙ୍କ ବାପାଙ୍କ ବନ୍ଧୁମାନଙ୍କ ପିଲାଙ୍କ ଠାରୁ ଅଲଗା । ସତେ କ'ଣ ଗଣତାନ୍ତ୍ରିକ ସମାଜବାଦକୃତ "ଏ ବର୍ଲିନ ପ୍ରାଚୀର' ଭାଙ୍ଗିବ !!'' 'ଖଜୁରୀଗଛ' ଗଳ୍ପରେ ସରକାରୀ ଅପାରଗତା ଓ ଅସାଧୁତାକୁ ବ୍ୟଙ୍ଗ କରାଯାଇ, କହିଛନ୍ତି—''ଏହା ସରକାରୀ କଳ । ଏଥିରେ ନୈସର୍ଗିକ ନ୍ୟାୟ ଛଡ଼ା ଅନ୍ୟ କିଛି ମିଳେନା । ତେଣୁ ପ୍ରମାଣ କରି ନ ପାରିଲେ କାର୍ଯ୍ୟାନୁଷ୍ଠାନ ଆପେ ଆପେ ନାଲି ଫିତାର ଅନ୍ତରାଳରେ ରହିଯିବ ।'' 'ଡାକ୍ତର ପୁଣି ସମୟ' ଆଉ ଏକ ଭିନ୍ନ କାହାଣୀ । ବଡ଼ ଅଫିସରଙ୍କ ସମୟ ଓ ସଦାଚାର ଜ୍ଞାନ ଉପରେ ଏ ଗଳ୍ପରେ ରହିଛି ତୀବ୍ର କଟାକ୍ଷ । 'ମେରିଆ ବଳଦ' ଗଳ୍ପରେ ଶାରଦା ବାବୁଙ୍କ ଅବସ୍ଥା ଅମଲାତନ୍ତ୍ରର ରସପାନ କରି, ସେଇ ଗଡ୍ଡଳିକା ସ୍ରୋତରେ ପଡ଼ି ଯାଇଥିବା ଲୋକମାନଙ୍କ ପରି । ''ମେରିଆ ବଳଦର ଅଭାବରେ ଧାନ ଅମଳ ଯେପରି ସମ୍ଭବ ନୁହେଁ ଶାରଦା ବାବୁଙ୍କ ଭଳି ଲୋକଙ୍କ ଅଭାବରେ ଶାସନ କଳ ମଧ୍ୟ ଅଚଳ । ** ମେରିଆ ବଳଦର ଥୋମଣାରେ ଖାଲି ପାଞ୍ଚଣ ପାହାର ଆଉ ,ଶାରଦା ବାବୁଙ୍କ ପେନ୍‌ସନ୍ ଓ ଗ୍ରାଚ୍ୟୁଟି ପାଇବାରେ ମଧ୍ୟ ଢେର ଅସୁବିଧା । ଖାଲି ଅବ୍‌ଜେକ୍‌ସନ୍ ।'' ନାଲି ଫିତା ବନ୍ଦ କରୁଥିବା ଓ ଖୋଲୁଥିବା ଲୋକଙ୍କ ଭାଗ୍ୟରେ ଯେ ଏପରି ବିଡ଼ମ୍ବନା ଲେଖାଥାଏ ତାହା ସେମାନେ ବୁଝନ୍ତି ବହୁ ବିଳମ୍ବରେ—ନିଜ ଅନୁଭବର ଯନ୍ତ୍ରଣାରେ । 'ସଭ୍ୟତାର ଢେଉ' ଗଳ୍ପରେ ନିରୀହ ନିରିମାଖି ଆଦିବାସୀର ଇଜ୍ଜତରେ ଆଞ୍ଚ ଆସିଲେ ସେ କିପରି ତାତିଯାଏ, ତାହାରି ବର୍ଣ୍ଣନା ଜୀବନ୍ତ ହୋଇ ଉଠିଛି । ବଡ଼ ବଡ଼ ସଭ୍ୟମାନେ ଯଦି ଅସଭ୍ୟ ହୁଅନ୍ତି, ତେବେ ଅସଭ୍ୟ ଓ ଅଶିକ୍ଷିତଙ୍କ ମୁହଁରୁ ଯେଉଁ ସତ୍ୟକଥା ଉଚ୍ଚାରିତ ହୁଏ ତାହା ଅତି ନିଷ୍ଠୁର । ଶିକାରୁର ସ୍ୱରରେ ଭାସି ଉଠିଛି—''ସରକାର ! ଆମର କାଣା ମା ବହେନ୍, ମା ବହେନ୍ ନୁହେଁ ସେ ? ସରକାର ! ତୋର ଆଗେ ତୋର ଝିକେ ଯଦି ଶାଳା ଏନ୍ତା କରି ଝିକିଥାଏତା ତୁଇ କାଣା କରିଥିତୁ କହ ?'' ଏଇ ପ୍ରଶ୍ନ ଏବେବି ଉଚ୍ଚାରିତ ହେଉଛି କୋରାପୁଟ 'ବା ମୟୂରଭଞ୍ଜର

Digitized by srujanika@gmail.com

ଶାଳବନରେ । ଏହାର ଉତ୍ତର ଶୁଭୁନି । ହୁଏତ ଉତ୍ତର ଦେବାକୁ କାହାରି ତୁଣ୍ଡ ଫିଟୁନି । 'ମଣିଷ ପ୍ରକୃତି' ଗଳ୍ପରେ ମଣିଷର ଆଚାର ବିଚାର ଉପରେ ବ୍ୟଙ୍ଗ କରି କୁହାଯାଇଛି—''ଏତେଦିନ ପରେ ବି ସେ ପ୍ରକୃତି ବଦଳିଲା ନାହିଁ; ଯଦିଓ ଏହା ଭିତରେ ପ୍ରକୃତି ନିଜେ କେତେ ବଦଳି ଗଲାଣି ।'' 'ତପସ୍ୱିନୀ' ଗଳ୍ପଟି ଆଉ ଏକ ପ୍ରକାରର । ଏହି ଗଳ୍ପରେ ମଧ୍ୟ କୁସଂସ୍କାର ବିରୁଦ୍ଧରେ ତୀବ୍ର ସ୍ୱର । ଏବେ ସମାଜରେ ବାବାମାନଙ୍କର ଉତ୍ପାତ ଏତେ ବଢ଼ି ଗଲାଣି ଯେ ସାଧାରଣ ଭକ୍ତମାନେ ତ୍ରାହି ତ୍ରାହି ଡାକ ଛାଡ଼ିଲେଣି । ସେହି ବାବାମାନଙ୍କ ପ୍ରକୃତିକୁ ବର୍ଣ୍ଣନା କରି କୁହାଯାଇଛି—''ସର୍ବଦା ସେପରି ଆପଣ କୌଣସି ବଞ୍ଚିତ ବାସନା ଓ କାମନାର ମୋହରେ ଚିନ୍ତାମଗ୍ନ । କାରଣ କ'ଣ ବାବା ?'' ଏଇ ପ୍ରଶ୍ନ ପଚାରିବା ପାଇଁ ଯେଉଁଦିନ ସାହସ କରିବେ ଭକ୍ତଗଣ, ସେହିଦିନ ବାବାମାନଙ୍କର ମୂଳୋତ୍ପାଟନ ସମ୍ଭବ ହେବ ସମାଜରୁ । 'ପୋଥି ବାଇଗଣ'ରେ ନିର୍ମଳ ହାସ୍ୟରସ ସହିତ ବାସ୍ତବତା ପ୍ରତି ଧ୍ୟାନ ଆକର୍ଷଣ କରାଯାଇଛି । ସବୁ ଜ୍ଞାନ ପୋଥି ବାଇଗଣ ହୋଇ ରହିବା ଦ୍ୱାରା 'ବାରି ବାଇଗଣ'ର ଚାହିଦା ମେଣ୍ଟେ ନାହିଁ କି ଜ୍ଞାନର ଉପଯୋଗ ହୁଏ ନାହିଁ । 'ଅଲରାସୂତାରୁ କେରାଏ' ଏବଂ 'ହିପୋକ୍ରିସି' ଗଳ୍ପ ଭିତରେ ଭରି ରହିଛି ସାଂପ୍ରତିକ ସମାଜ ଓ ଆଚରଣ ପ୍ରତି ପରିହାସ ।

ଜୀବନଧର୍ମୀ ସାହିତ୍ୟରେ ଜୀବନ ପ୍ରତି ମମତାବୋଧ ପ୍ରକଟିତ ହୁଏ । ଜୀବନ ପ୍ରତି ମମତାବୋଧରୁ ଜାତହୁଏ ଜୀବନ ପ୍ରତି ଅଙ୍ଗୀକାରବଦ୍ଧତା । ସେଇ ଅଙ୍ଗୀକାରରୁ ସୃଷ୍ଟି ହୁଏ ଜୀବନକୁ ଶୁଦ୍ଧ, ନିର୍ମଳ କରିବାର ଅଭିଳାଷ । ସାମ୍ପ୍ରତିକ ସମାଜରେ ଧର୍ମ ଓ ପରମ୍ପରା ନାମରେ, ନୀତି ଓ ନିୟମ, ଆଚାର ଓ ବିଚାର ନାମରେ ଏତେ ଆବର୍ଜନା ଓ ଅଜ୍ଞତା ଜନଚରିତ୍ରକୁ କଳଙ୍କିତ କରେ ଯେ ସେଥିରୁ ଜନସାଧାରଣଙ୍କୁ ଉଦ୍ଧାର କରିବା ପ୍ରତ୍ୟେକ ଲେଖକର ଦାୟିତ୍ୱ ହୋଇଯାଏ । ଡାକ୍ତର କମଳାକାନ୍ତ କର ରୋଗ ଚିହ୍ନନ୍ତି, ରୋଗୀର ନାଡ଼ି, ନକ୍ଷତ୍ର ପରୀକ୍ଷା କରି ରୋଗ ନିର୍ଣ୍ଣୟ ଓ ରୋଗର ନିଦାନ ସ୍ଥିର କରନ୍ତି । ଉଦ୍ଦେଶ୍ୟ କେବଳ ରୋଗୀକୁ ରୋଗମୁକ୍ତ କରିବା । ଭାରତୀୟ ପରମ୍ପରାରେ ଦୁଃଖ, ଶୋକ, ବ୍ୟାଧି ଓ ଯନ୍ତ୍ରଣାରୁ ଜୀବନକୁ ମୁକ୍ତ କରିବା ସକାଶେ ପ୍ରାର୍ଥନା କରାଯାଇଛି :

''ସର୍ବେ ଭବନ୍ତୁ ସୁଖୀନଃ ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣୀ ପଶ୍ୟନ୍ତୁ ମାକଶ୍ଚିତ୍ ଦୁଃଖଭାଗ୍ ଭବେତ୍ ।''

Digitized by srujanika@gmail.com

ସମସ୍ତଙ୍କୁ ସୁଖୀ, ନିରାମୟ, ଭଦ୍ର କରିବାର ଦାୟିତ୍ୱ ସାହିତ୍ୟର ନୁହେଁ ସତ୍ୟ; କିନ୍ତୁ ସମସ୍ତଙ୍କୁ ସତ୍ ଓ କୁସଂସ୍କାର ମୁକ୍ତ, କର୍ମୀ ଓ ସଦାଚାରୀ ହେବା ପାଇଁ ପ୍ରେରଣା ଓ ଉପାଦାନ ଯୋଗାଇବା ସାହିତ୍ୟର ଧର୍ମ । ସେଇ ଧର୍ମ ପାଳନ କରିବାକୁ ଯାଇ ଡାକ୍ତର କର ଯେଉଁସବୁ କାହାଣୀ କହିଛନ୍ତି ସେଥିରୁ ତାଙ୍କର ମାନବବାଦୀ ଚେତନା ପରିସ୍ଫୁଟ ହୁଏ । ଏହି ଦୃଷ୍ଟିରୁ ଗଳ୍ପଗୁଡ଼ିକ ଯେ ପାଠକମାନଙ୍କ ଦ୍ୱାରା ଆଦୃତ ହେବ ତାହା ଆଶା କରାଯାଇପାରେ । ଲେଖକଙ୍କର ଏହା ପ୍ରଥମ ପ୍ରୟାସ । ତାଙ୍କୁ ଏଇ ଅମଡ଼ା ବାଟର ଆକର୍ଷଣ ଆହୁରି ଉତ୍ପ୍ରେରିତ କରୁ ଏବଂ ତାଙ୍କ ରଚନା ଆହୁରି ପଲ୍ଲବିତ ଓ କୁସୁମିତ ହେଉ ଏତିକି ଜଗନ୍ନାଥଙ୍କ ଠାରେ ପ୍ରାର୍ଥନା ।

ଇତି

ଭୁବନେଶ୍ୱର　　　　　　　　　　　　ସାତକଡ଼ି ହୋତା

Digitized by srujanika@gmail.com

# ପ୍ରାକ୍‌କଥନ

ଆଜିକାଲିକାର ବ୍ୟସ୍ତ ଜୀବନ ଭିତରେ ବଡ଼ ଗଳ୍ପ ବା ଉପନ୍ୟାସ ପଢ଼ିବାକୁ ଧୈର୍ଯ୍ୟ କେତେକଙ୍କର ଅଛି! ସମାଜ ଭିତରେ ଛୋଟ ଛୋଟ ଅଥଚ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସ୍ୱଭାବ, ଚରିତ୍ର ରହିଛି ଯାହାକି ଅନେକ ସମୟରେ ଲୋକଙ୍କୁ ବିବ୍ରତ, ଚିନ୍ତିତ ତଥା ଚକିତ କରିପକାଏ, ଅଥଚ ପ୍ରତିବାଦ ବା ପ୍ରତିରୋଧ କରିବାକୁ ଆମକୁ ନିବୃତ କରାଏ ଅନେକ କାରଣ! ଯଦିବା କେତେବେଳେ କେଉଁ କୋଣରୁ ପ୍ରତିବାଦର ସ୍ୱର ଶୁଣାଯାଏ ତାହା ସମ୍ପୂର୍ଣ୍ଣ ଏକକ ଓ ସେସବୁ ଧାରାବାହିକ ନୁହେଁ। ସତେ ଯେପରି ସେସବୁ ପ୍ରତି କାହାରି ସମର୍ଥନ ନାହିଁ!! ତେଣୁ ଗୁରୁତ୍ୱ ନାହିଁ ବୋଲି ମନେ କରାଯାଏ – ପାଗଳର ପ୍ରଳାପ ବୋଲି ମଧ୍ୟ କେହି କେହି ମନେ କରନ୍ତି।

ଘଟଣାଗୁଡ଼ିକ ଅନ୍ୟ ଦୃଷ୍ଟିରେ ଦେଖିଲେ କିନ୍ତୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଓ ଆମୋଦଦାୟକ। ତେଣୁକରି ବ୍ୟସ୍ତ ଜୀବନ ଭିତରେ ସାମାନ୍ୟ ଆନନ୍ଦ ଦେବା ପାଇଁ ଓ ତତ୍ ସହିତ ଏକ ମୃଦୁ ପ୍ରତିବାଦ ଉଦ୍ଦେଶ୍ୟରେ ତଥା ଏସବୁ ବାବଦରେ ପୂର୍ବରୁ ଯଦି କିଛି ଥାଏ ତାହାର ଧାରାବାହିକତାକୁ ବଜାୟ ରଖିବା ପାଇଁ ଗଳ୍ପ ଛଳରେ ଏଗୁଡ଼ିକର ଅବତାରଣା।

ଏସବୁ ଗଳ୍ପ ହେଲେବି ସେଗୁଡ଼ିକ ଭିତରେ ଥିବା କିଛି କିଛି ସତ୍ୟ ଘଟଣାଗୁଡ଼ିକ କୌଣସି ଉଦାସୀନ ମନ ଭିତରେ କେବେ କେମିତି ସ୍ପଷ୍ଟ କଥା କହିବାକୁ ଯଦି ପ୍ରେରଣା ଯୋଗାଏ ତାହାହେଲେ ମଧ୍ୟ କିଛିଟା ଶ୍ରମ ସାର୍ଥକ ହେବ। ଗୁଣ୍ଡୁଚିମୂଷାର ବାଲି ପକାରେ ଯଦି ରାବଣ ବଧ ପାଇଁ କିଛି ସାହାଯ୍ୟ ହୋଇପାରିଲା ସେହିଟା ହିଁ ଆନନ୍ଦ। ମୋର ବିଶ୍ୱାସ, ଏଭଳି ଚିନ୍ତାର ସାମୂହିକ ଉଦ୍ରେକ ଘଟିଲେ ହିଁ କେବଳ ସମାଜର କିଛି ଇପ୍ସିତ ପରିବର୍ତ୍ତନ ଘଟିପାରିବ। ଏ ଗଣତନ୍ତ୍ର ଯୁଗରେ ଆଉ ଏକକର ସ୍ଥାନ ନାହିଁ।

ମଣିଷର କାର୍ଯ୍ୟ ତା'ର ଜନ୍ମଗତ ପ୍ରକୃତି ଓ ପ୍ରବୃତ୍ତିକୁ ନେଇ। ସେଥିରେ ଦୋଷ କାହାରି ନାହିଁ। କେବଳ ଏହି ସ୍ୱତଃସ୍ଫୂର୍ତ୍ତ କାର୍ଯ୍ୟ, ଛୋଟ ହେଉ ବା ବଡ଼ ହେଉ, ସମାଜର ପ୍ରତ୍ୟେକ ସ୍ତରରେ କିଭଳି ପ୍ରଭାବ ପକାଉଛି ତା'ରି ସମ୍ପର୍କରେ ସଚେତନତା ରହିବା ହିଁ ଆବଶ୍ୟକ ଏବଂ ସେହି ସଚେତନତା ସୃଷ୍ଟି

Digitized by srujanika@gmail.com

କରିବା ପାଇଁ କିଛି ସତ କିଛି ମିଛ ଘଟଣାଗୁଡ଼ିକର ଏକ ପାଗରେ ଏ ଗଳ୍ପଗୁଡ଼ିକ ସୃଷ୍ଟି କରାଯାଇ ଅଛି । ଆତ୍ମା ସତ୍ୟ, ଶରୀର ମିଥ୍ୟାଭଳି ଏଥିରେ ଲିପିବଦ୍ଧ ଘଟଣା ସକଳର ରୂପ ମିଥ୍ୟା ଓ ମର୍ମ ସତ୍ୟ ।

ଲେଖିବାର ସୃଜନୀଶକ୍ତି ହିଁ ଭଗବତ୍ ଦତ୍ତ । ତେଣୁ ମୁଁ ଜାଣେନା ଏ ଲେଖା ସବୁ କିଭଳି ଆଦୃତ ହେବ । ଅତୀତରେ ମୋର କେତୋଟି ଗଳ୍ପ ପଢ଼ିଥିବା କେତେକ ବନ୍ଧୁଙ୍କ 'ଛୁଞ୍ଚି ଗେଞ୍ଜା'ରୁ ହିଁ ଏହି 'ସ୍ୱଷ୍ଟକଥା'ର ସୂର୍ଯ୍ୟ ଦର୍ଶନ । ମୁଁ ପ୍ରୋତ୍ସାହନର ଅନ୍ୟନାମ 'ଛୁଞ୍ଚି ଗେଞ୍ଜା' କହୁଛି । ଏହି 'ପିନ୍ ପ୍ରିକ୍'ରେ ବ୍ୟସ୍ତ ହୋଇ ଯାହା କିଛି ଲେଖି ପ୍ରକାଇଛି । ସୁଲେଖକ ଓ କବିବନ୍ଧୁ ଡା: ଉପେନ୍ଦ୍ର ପ୍ରସାଦ ନାୟକ ଏହି 'ଛୁଞ୍ଚି ଗେଞ୍ଜା' ନାଟକର ମୁଖ୍ୟନାୟକ ଓ କବିବନ୍ଧୁ କମଳାକାନ୍ତ ପଣ୍ଡା (କଳ୍ପାନ୍ତ) ଏହାର ପାର୍ଶ୍ୱ ନାୟକ । ଦିଗ୍‌ଦର୍ଶନର ଦାୟିତ୍ୱ ମୋର ପରମ ହିତୈଷୀ ପ୍ରବୀଣ ସାହିତ୍ୟିକ ଶ୍ରୀଯୁକ୍ତ ସାତକଡ଼ି ହୋତା ମହାଶୟ ।

ଏହି 'ସ୍ୱଷ୍ଟକଥା'ର ରୂପାୟନ ପାଇଁ ଏହିମାନେ ହିଁ ମୁଖ୍ୟତଃ ଦାୟୀ ହୋଇଥିଲେ ହେଁ, ମୋର ପ୍ରିୟ ନାତି ଶ୍ରୀମାନ୍ ଶ୍ୟାମାନନ୍ଦ ମିଶ୍ର, ପୁସ୍ତକଟିର ଛାପିବାର ଦାୟିତ୍ୱ ସୁଚାରୁରୂପେ ତୁଲାଇବା ପାଇଁ ସ୍ୱତଃ ବାହାରି ନ ଆସିଥିଲେ, ଆଶା ଆଶାରେ ହିଁ ରହିଯାଇଥା'ନ୍ତା ଏବଂ ସର୍ବୋପରି ମୋ ପିଲାମାନେ, ତାଙ୍କ ମା'ଙ୍କ ସହିତ ଏହି 'ସ୍ୱଷ୍ଟକଥା'ର ପ୍ରକାଶନ ପାଇଁ ଅତିବେଶୀ ଆଗ୍ରହ ପ୍ରକାଶ ନ କରିଥିଲେ ଏହାର ଗଜାମରୁଡ଼ି ମଧ୍ୟ ହୋଇଥା'ନ୍ତା । ଅବଶ୍ୟ 'ବିଦ୍ୟାପୁରୀ' ଭଳି ସ୍ୱନାମଧନ୍ୟ ପ୍ରକାଶନ ସଂସ୍ଥା ମୋର ଏହି ପ୍ରଥମ ପୁସ୍ତକଟିର ପ୍ରକାଶକ ହୋଇ ମୋତେ ଚିର ଋଣୀ କରିଛନ୍ତି । ତେଣୁ ଏହାର ସମସ୍ତ ସଫଳତା ସେହିମାନଙ୍କର । ଆଉ ବିଫଳତା ଯାହାକିଛି, ସବୁ ଏ ଲେଖକର ।

ପରିଶେଷରେ, ଗୋଟିଏ ବଣମଲ୍ଲି, ମୋ ଗାଁର ପୁଅ, ଆୟୁଷ୍ମାନ୍ ଶ୍ରୀମାନ୍ ଗଣେଶ୍ୱର ବାରିକ, ଏହି ପୁସ୍ତକର ମଲାଟ ଉପରେ ଯେଉଁ ଶେଷ ତୂଳିକା ଘଷି ଦେଇ ମୁଣ୍ଡି ମାରିଛି, ସେ ତ ଏହାର ସମସ୍ତ ଗୌରବର ଅଧିକାରୀ ।

ଶେଷରେ 'ସର୍ବେ ଭଦ୍ରାଣି ପଶ୍ୟନ୍ତୁ' – ଏହା ହିଁ କାମ୍ୟ ।

**କମଳାକାନ୍ତ କର**

Digitized by srujanika@gmail.com

# ସୂଚୀ

## ଶିରୋନାମ



*Digitized by srujanika@gmail.com*

# ସ୍ପଷ୍ଟକଥା

ଡିସେମ୍ବର ମାସ ଅଧାଅଧି ହେବ । ସକାଳୁଆ ଶୀତଟା ଜମି ଆସିଲାଣି । ଆକାଶଟା ପତଳା କୁହୁଡ଼ିରେ ଆଚ୍ଛାଦିତ ହୋଇଥିବାରୁ ଝରକା ଦେଇ ଲୋକଟାକୁ ଚିହ୍ନିବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ବୟସ୍‌ର ଚାପରେ ଆଖିରେ ମଧ ପରଳର ପତଳା ସର ପଡ଼ିବାର ଉପକ୍ରମ ହେଲାଣି । ତେଣୁ କୁହୁଡ଼ିର ପରଦାକୁ ଭେଦ କରି ଆଲୋକର ପ୍ରତିଫଳନ ଆଖିର କୃଷ୍ଣପଟ୍ଟଳ ଉପରେ ପ୍ରତିବିମ୍ବ ସୃଷ୍ଟି କରିବାରେ ଯଥେଷ୍ଟ କ୍ଷମ ନୁହେଁ । ପୁଣି ଅକସ୍ମାତ୍ ଏତେ ସକାଳୁ କବି ରମଣୀରଞ୍ଜନଙ୍କ ଆବିର୍ଭାବକୁ କାହିଁକି ବା ମୁଁ ଆଶା କରିବି ? ରୁକ୍ଷ କଣ୍ଠରେ, ଗାରୁଗାରୁ ହୋଇ ବାହାରି ଆସିଲି, "ଏମାନଙ୍କର ସମୟ ଅସମୟର ଜ୍ଞାନ ନାହିଁ । ମଣିଷ ଉଠି ମୁହଁ ଧୋଇବାକୁ ମଧ ତର ସହୁ ନାହିଁ ଗେଟ୍‌ର ଲୁହାଟାକୁ ଧଡ଼ ଧଡ଼ କରି ବାଡ଼େଇ ଚାଲିଥିବେ ବିନା ପ'ଜ୍‌ରେ । ସତେ ଯେପରି ମଣିଷର ସବୁ କାମ ୪୮୬ ମଡେଲ କମ୍ପ୍ୟୁଟର ପରି ।" ମୋର ମଧ ଖିଆଲ ନାହିଁ ଯେ, ଯେତେ ଜୋରରେ ମୁଁ ଗାରୁଗାରୁ ହେଉଥିଲି ଯୁବ କବିଙ୍କ କର୍ଣ୍ଣଗହ୍ୱରରେ ତାହା ପଶି ତାଙ୍କ ଅଭିମାନୀ ମନ ଭିତରେ ନାନା ଭାବନାର ତରଙ୍ଗ ସୃଷ୍ଟି କରୁଥିବ ବୋଲି ।

ସେ ଯାହାହେଉ, ଗେଟ୍ ପାଖକୁ ଯାଇ ଦେଖେ, କବି ରମଣୀରଞ୍ଜନ । ମୋତେ ଦେଖି ସେ ହସିଲେ । ହସ କିନ୍ତୁ ତାଙ୍କର ସେଇ ଶୁଖିଲା । ସତେ ଯେପରି ଅଧୁଲିଟିଏ କେଉଁଠି ହଜେଇ ଦେଇଛନ୍ତି । କବି ହେଲେ ତ ମୋର ମନେ ହୁଏ ମୁହଁଟା ସଦା ପ୍ରଫୁଲ୍ଲ ରହିବାର କଥା । ହେଲେ ରମଣୀରଞ୍ଜନ ତ କେବଳ କବି ନୁହନ୍ତି, ସେ ଜଣେ କଥାକାର, ଔପନ୍ୟାସିକ, ନାଟ୍ୟକାର, ଶିଶୁ ସାହିତ୍ୟିକ, ପତ୍ରିକାର ସମ୍ପାଦକ ଏବଂ କ'ଣ ନୁହନ୍ତି ? ତେଣୁ ଭାବନା ସାଗରରେ ସବୁବେଳେ ସେ ଉବୁଟୁବୁ । ତାଙ୍କ ମସ୍ତିଷ୍କଟା ଏତେ ଭାରି ବୋହୁଥିବାବେଳେ ମୁହଁଟା ଆଉ ସରସ ବା କିପରି ହେବ ଶୁଖି ନ ଯାଇ !!

ବାବୁ ରମଣୀଙ୍କ ସହିତ ମୋର ପରିଚୟ ବେଶ୍ କିଛି ବର୍ଷରୁ । ତାଙ୍କ ସ୍ତ୍ରୀ ମୋର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କର ଭଉଣୀ ହୋଇଥିବାରୁ ତାଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ମଧ ଆମଘରର ସେହିପରି । ବୟସର ତାରତମ୍ୟ ବହୁତ

Digitized by srujanika@gmail.com

ଥିବାରୁ ଭଦ୍ରଲୋକ ମୋ ସହିତ ସିଧାସଳଖ କଥା ହେବାକୁ ଟିକେ ସଂକୋଚ କରନ୍ତି । ଭାଉଜଙ୍କ ଜରିଆରେ ଯାହା କିଛି ଆଳାପ । ତେଣୁ ରମଣୀବାବୁ ଶୃଙ୍ଖଳା ହସ ସହିତ ଉପରକୁ ଉଠିଯାଇଥିବା ଯୋଡ଼ହସ୍ତ ମାଧ୍ୟମରେ ପ୍ରଭାତକାଳୀନ ଅଭିନନ୍ଦନଟା ଜଣାଇଦେଇ, ଭାଉଜ ଭାଉଜ ହୋଇ ପଶିଗଲେ ଭିତରକୁ । ଅନ୍ଦର ମହଲରେ ଯେଉଁମାନଙ୍କର ଜବରଦଖଲ, ମୁଖଶାଳାରେ ଥିବା ଏ ଅକିଞ୍ଚନଙ୍କୁ ବା ପଚାରିବ କିଏ ? ଗେଟ୍‌ଟାକୁ ବନ୍ଦ କରି ତାଙ୍କ ପଛେ ପଛେ ଚାଲିଲି ।

ଭାଉଜ ଭାଉଜ ଚିତ୍କାରରେ ଭାଉଜଙ୍କ ରାତିର ଶେଷ ପ୍ରହରର ଶୀତୁଆ ନିଦଟା ଭାଙ୍ଗିଗଲା । ରାତି ପାହିବାର ସଙ୍କେତ ଦେଇ ଗାଁ କିଆବୁଦା ଆଢୁଆଳରୁ କୁମ୍ଭାଟୁଆର ରାବଭଳି ଶବ୍ଦଟା ଭାଉଜଙ୍କୁ ଜଣାପଡ଼ିଲା ବୋଧହୁଏ । ଧଡ଼ପଡ଼ ହୋଇ ଉଠି ମୁହଁରେ କାନିଟକୁ ଘୋଡ଼େଇ ଚାଲିଲେ ଓ୍ୱାସ୍‌ବେସିନ୍ ପାଖକୁ ମୁହଁ ଧୋଇବାକୁ । ଅଧୁଆ ମୁହଁରେ ଯଦି କାହା ମୁହଁକୁ ସେ ଚାହାନ୍ତି, ତାହାହେଲେ କେଜାଣି ମୁହଁର ପ୍ରଭାବରୁ ସାରା ଦିନଟା କଟରକଟରରେ ଚାଲିଯାଇପାରେ !! ମୁହଁ ଧୋଇ ଦାଣ୍ଡଘରକୁ ଆସି ଦେଖନ୍ତି ବାବୁ ରମଣୀରଞ୍ଜନ ବସିଛନ୍ତି । ରକ୍ଷାକର, ମୁଁ ଭାବୁଥିଲି ସତରେ 'କୁଁଭାଟୁଆଟା କୋଉଠୁ ଏ ସହର ଭିତରେ ଆସି ସକାଳୁ ପହଞ୍ଚିଗଲା । ଗାଁ ଛାଡ଼ିଲା ଦିନରୁ ସକାଳର କୁମ୍ଭାଟୁଆ ବା ଡାମରାକୁଆର ରାବ ଶୁଣିବାକୁ ମିଳୁ ନାହିଁ ।' ଭାଉଜଙ୍କ ନିଦରୁ ଉଠା ଟଳସପ୍ତକ ସ୍ୱରର ସମ୍ଭାଷଣରେ ଲେଖାଯୋଖା ନଣନ୍ଦେଇ ରମଣୀରଞ୍ଜନ ଜୋର୍‌ରେ ହସି ଉଠିଲେ ଓ କହିଲେ :

''ଆପଣ ତ ସବୁବେଳେ ଇମିତି କହିବେ । ସତରେ ଭାଉଜ ! ଆପଣଙ୍କର ଏପରି ପରିହାସ ଖୁବ୍ ନାଟକୀୟ ଢଙ୍ଗର ।''

ରମଣୀବାବୁଙ୍କର ବନ୍ଧୁମାନଙ୍କ ଘରେ କୌଣସି ପାନୀୟ ଖାଇବାର ଅଭ୍ୟାସ ନ ଥିବାରୁ ଓ ଦାନ୍ତ ନ ଘଷି ସିଧା ଆଜି ଭାଉଜ ଦର୍ଶନରେ ବାହାରି ଆସିଥିବା କଥା ଶୁଣି ଆମ ଘରଣୀ ମଧ୍ୟ ବହୁତ ଖୁସ୍ । କାରଣ ବନ୍ଧୁ ଚର୍ଚ୍ଚା ପାଇଁ ବିଶେଷ କିଛି ପରିଶ୍ରମ ନାହିଁ ଏବଂ ସକାଳୁ ସକାଳୁ ରମଣୀରଞ୍ଜନଙ୍କ ଭଳି କବି, ଔପନ୍ୟାସିକ, ନାଟ୍ୟକାର ତଥା ରସିକଙ୍କ ସହିତ କିଛି ସମୟ ଆଳାପ କରିବାର ସୁଯୋଗଟା ଦଇବ ଯୋଗେଇ ଦେଲେ । ଆଜିଦିନଟା ତାଙ୍କର ନିଶ୍ଚୟ ଭଲରେ କଟିବ, ଏଥିରେ ଆଉ ସନ୍ଦେହ ନାହିଁ । ରମଣୀବାବୁ ଚର୍ଚ୍ଚା ଆରମ୍ଭ କଲେ ତାଙ୍କ ପୂର୍ବ ରାତିରେ ଉଦ୍‌ଘୋଷିତ ରେଡିଓ ନାଟକ 'ନଷ୍ଟ ନୀଡ଼ରେ ହସର କୁଆର'ରୁ । ବହୁ ପୂର୍ବରୁ ସେ ମଧ୍ୟ ନୋଟିସ୍ ଦେଇଥିଲେ ତାଙ୍କର ଏ ପ୍ରୋଗ୍ରାମ୍‌ଟା ଶୁଣିବା ପାଇଁ ।

Digitized by srujanika@gmail.com

ଘରଣୀ ତ ଆମର ନଣନ୍ଦେଇଙ୍କ କୃତୀରେ ସବୁବେଳେ ଶତଜିହ୍ୱ ପ୍ରଶଂସିକା । ତେଣୁ ତାଙ୍କର ପ୍ରଶଂସା ପେଡ଼ି ଯଦି ଖୋଲିଯାଏ, ତାହାହେଲେ ତ କଥା ସରିଲା । ଦିଅଁଙ୍କର ମଧ୍ୟ ଅଶନ ବନ୍ଦ । କଥାର ସ୍ରୋତକୁ ବନ୍ଦ ନ କଲେ ଶାନ୍ତିରେ ଖାଇ ଦପ୍ତର ଯିବା ହୁଏତ ସମ୍ଭବ ହେବ ନାହିଁ ସମୟାନୁସାରେ । ତେଣୁ ଦାନ୍ତ ଘଷୁ ଘଷୁ ଆରମ୍ଭ କଲି :

'ହଇହୋ ନାଟ୍ୟକାର ମହାଶୟ, ସେ ମନ୍ତ୍ରୀ ମହୋଦୟଙ୍କୁ ବିବାହ ଫାନ୍ଦରେ ନ ପକାଇଥିଲେ କ'ଣ ତୁମ ନାଟକର ରସଭଙ୍ଗ ହୋଇ ଯାଇଥାଆନ୍ତା ? ମନ୍ତ୍ରୀଙ୍କ ପାଇଁ ସମାଜ ସେବାର ଆଉ କିଛି ମାର୍ଗ କ'ଣ ନ ଥିଲା ? ତମ ମନ୍ତ୍ରୀ ଏପରି କେତେ ଦୁଃସ୍ଥାକନ୍ୟାଙ୍କର ପାଣିଗ୍ରହଣ କରି ସେମାନଙ୍କୁ ଉଦ୍ଧାର କରିପାରିବେ ? ତୁମ ମତରେ ମନ୍ତ୍ରୀମାନେ ସମାଜର ଏ ସମସ୍ୟାକୁ କ'ଣ ଏକା ଏକା ସମାଧାନ କରିଦେଇପାରିବେ ? ତାଙ୍କ ପାଖରେ କ'ଣ କେହି ଚାମ୍‌ଚା ନ ଥିଲେ ? ତାଙ୍କୁ ଲଗେଇ ଦେଲ ନାହିଁ ଏ କାର୍ଯ୍ୟରେ ? ସେମାନଙ୍କର ସବୁ ଯେତେ ସଂଖ୍ୟା, ତାଦ୍ୱାରା ହେଲେ କିଛିମାତ୍ରାରେ ସୁଫଳ ମିଳିଥାନ୍ତା । ସେମାନଙ୍କ ମାଧ୍ୟମରେ ତୁମେ ଯୁବ ସମାଜକୁ ଏଭଳି ଦୁଃସ୍ଥାମାନଙ୍କର ତ୍ରାଣ ପାଇଁ ଏକ ଆହ୍ୱାନ ମଧ୍ୟ ଦେଇପାରିଥାନ୍ତ । ତା'ପରେ ସମସ୍ୟାବହୁଳ ରାଜନୀତି ଓ ପ୍ରଶାସନ ଭିତରେ ଏଭଳି ସରସତା ସୃଷ୍ଟି ଲାଗି ମନ୍ତ୍ରୀଙ୍କର ତୁମେ ସମୟ କରିପାରିଲ କିପରି ? ରାଜନୀତି ଓ ପ୍ରଶାସନରେ ପ୍ରେମରସ ତ ଅନ୍ୟପ୍ରକାର ଧାରରେ ବହେ । ମନ୍ତ୍ରୀଙ୍କ ଦ୍ୱାରା ସମାହିତ ହେବା ପାଇଁ ସମାଜର ଅନ୍ୟ କୌଣସି ସମସ୍ୟା ତୁମେ ଠିଆ କରାଇପାରିଲ ନାହିଁ ? ସମାଜରେ କ'ଣ ଦୈହିକ ପ୍ରେମ ଛଡ଼ା ଆଉ କିଛି ପ୍ରେମ ନାହିଁ ସାମାଜିକ ଆଲେଖ୍ୟରେ ରୂପ ଦେବାକୁ ?

ଭାଉଜଙ୍କ ସମ୍ମୁଖରେ ଏପରି ସମାଲୋଚନାଟା ଶୁଣିବାକୁ ରମଣୀରଞ୍ଜନ ଆଦୌ ପ୍ରସ୍ତୁତ ନ ଥିଲେ । ଗୋରା ତକତକ ମୁହଁ ଓ କାନ ଦୁଇଟି ତାଙ୍କର ଲାଲ ପଡ଼ିଗଲା । କହିଲେ, ''ଆପଣ ତ ସବୁବେଳେ ଏଇମିତି କହିବେ ।''

''ନାହିଁ, କ'ଣ ଭୁଲ କହିଲି ? ସାମାଜିକ ନାଟକ ଯୁଗକୁ ଚାହିଁ ହେବା ଉଚିତ । ପୁରୁଣା ସେହି 'ସୌଦାଗର ରାଜକନ୍ୟା' ଓ ବର୍ତ୍ତମାନର 'ମନ୍ତ୍ରୀ ଆଉ ଅସହାୟା ବାଳିକା'କୁ କେନ୍ଦ୍ର କରି ନାଟକ ରଚନା କୌଣସି ସଂସ୍କାର ବା ଚେତନାଜାଗ୍ରତମୂଳକ ନୁହେଁ । କୌଣସି ନୂଆ କଥା ତ ଆଦୌ ନୁହେଁ ।''

'ତଥାପି ସେ ସବୁତ ପୁଣି ରହିବ ଓ ତାକୁଇ ନେଇତ ନାଟକ ଲେଖାହେବ, କବିତା ରଚନା ହେବ, ଗଳ୍ପ, ଉପନ୍ୟାସ ଏସବୁ ପ୍ରକାଶ ପାଇବ । ସବୁ ଲେଖାତ ଆଉ ''ସାମାଜିକ ସଂସ୍କାରମୂଳକ ହେବ, ଏପରି କିଛି ନାହିଁ ।'' ରମଣୀବାବୁ କହିଲେ ।

Digitized by srujanika@gmail.com

ତାହା ସତ୍ୟ । ସ୍ତ୍ରୀ-ପୁରୁଷଙ୍କ ପ୍ରେମ, ବିବାହ, ବିଚ୍ଛେଦ ସମାଜର ସୃଷ୍ଟି କାଳରୁ ହିଁ ରହିଛି । ମନୁଷ୍ୟର ଆଦିମ ପ୍ରବୃତ୍ତିକୁ ଖାଲି ସବୁବେଳେ ଘଷିମାଜି ନାଟକ ରଚନା କଲେ କ'ଣ ହେବ ? ତା'ପରେ 'ଯାତ୍ରା' ଓ 'ମଞ୍ଚ' ବା 'ରେଡିଓ ନାଟକ' ଭିତରେ କିଛି ତଫାତ୍ ରହିବା ଦରକାର ଦର୍ଶକ ଓ ଶ୍ରୋତାମାନଙ୍କର ବର୍ଗକୁ ନେଇ ।''

'ତଥାପି ନାଟକର ଏକ ଉଦ୍ଦେଶ୍ୟ ମନୋରଞ୍ଜନ କରିବା', ରମଣୀରଞ୍ଜନ ବଡ଼ ଦୃଢ଼ କଣ୍ଠରେ କହିଲେ ।

'ଅବଶ୍ୟ, ଅବଶ୍ୟ । ସେକ୍ସ ଅପେକ୍ଷା ଅଧିକ ମନୋରଞ୍ଜନ ଆଉ କେଉଁ ବିଷୟ କରିପାରେ ? ସେଇଥିପାଇଁ କବିତା ଠାରୁ ଆରମ୍ଭ କରି, କ୍ଷୁଦ୍ରଗଳ୍ପ, ଉପନ୍ୟାସ ଓ ନାଟକ ଇତ୍ୟାଦି ତୁମର ସମସ୍ତ ରଚନାରେ ଏହି ସେକ୍ସର ପ୍ରବଳ ପ୍ଲାବନ ।'

ରମଣୀରଞ୍ଜନଙ୍କ ମୁହଁ ଫିକା ପଡ଼ିଗଲା । କହି ଚାଲିଲି 'ସମାଜ ଭିତରେ ସେକ୍ସକୁ ଛାଡ଼ି ଆଉ ଯେତେ ଯେତେ କୁସଂସ୍କାର, ଅପସଂସ୍କୃତି ଏବଂ ସାମାଜିକ ଦୁର୍ନୀତି ଭର୍ତ୍ତି ହୋଇରହିଛି, ଜୀବନର ପ୍ରତିଟି ମୁହୂର୍ତ୍ତରେ ଆମେ ଯେପରି ସେ ସବୁର କାରଣରୁ ନାନା ପ୍ରକାରର ସାମାଜିକ ବ୍ୟାଧିରେ ସଢୁଛେ ଓ ଆମ ପିଲାଙ୍କୁ ନେଇ ସଢ଼ାଉଛେ ପରମ୍ପରା ନାମରେ, ତାକୁ ନେଇ କ'ଣ ସୁନ୍ଦର ଆଖ୍ୟାୟିକା ରଚନାରେ ତୁମେ ଆନନ୍ଦ ପାଇପାରିବ ନାହିଁ ନା ପାଠକ, ଦର୍ଶକ ବା ଶ୍ରୋତୃମଣ୍ଡଳୀ ପାଇପାରିବେ ନାହିଁ ? ନିଛକ ସତକଥାକୁ ନିପଟ ମିଥ୍ୟାବାଦୀ ମଧ ପ୍ରଶଂସା କରିଥାଏ । ତେଣୁ ତୁମେ ତାହାରି ଉପରେ ସାହିତ୍ୟ ସୃଷ୍ଟିକଲେ ଆଦର ପାଇବ ନାହିଁ ବୋଲି କାହିଁକି ଭାବୁଛ ? ତୁମେ ଚିନ୍ତା କରିପାରୁଛ ଏ ଧରଣର ଲେଖା ଆମର କୋମଳମତି କିଶୋର କିଶୋରୀମାନଙ୍କ ମନ ଉପରେ କି ପ୍ରଭାବ ପକାଉଛି ? ତୁମଠାରେ ଲେଖିବାର ଐଶୀଶକ୍ତି ରହିଛି । ତା'ର ସଦୁପଯୋଗ କରୁନାହଁ କାହିଁକି ?''

''ଛାଡ଼ନ୍ତୁ ସେ ସବୁ କଥା । ମୋର ବେଳ ନାହିଁ । ଆପଣଙ୍କ ବକ୍ତୃତା ଶୁଣିଲେ ମୋର ସବୁକାମ ଭଣ୍ଡୁର ହୋଇଯିବ । ମୁଁ ଆସିଥିଲି ଆପଣଙ୍କୁ ନିମନ୍ତ୍ରଣ କରିବାକୁ । କାଲି ସନ୍ଧ୍ୟାରେ ଆପଣ, ଭାଉଜ ଓ ପିଲାମାନେ ଆସିବେ, ଆମ ନୂଆ ଘରକୁ । ନୂତନ ଗୃହପ୍ରବେଶ ଉପଲକ୍ଷେ ଏକ ବନ୍ଧୁମିଳନର ଆୟୋଜନ କରିଛି । ନିଶ୍ଚୟ ଆସିବେ ।''

ମୋର ଏ ଶୁଷ୍କ ଆଦର୍ଶପୂର୍ଣ୍ଣ ଓଜଃସ୍ୱିନୀ ଭାଷଣରେ ବୋର୍ ହୋଇ ରମଣୀରଞ୍ଜନଙ୍କ ଭାଉଜ ଏ ଭିତରେ ଶୌଚାଳୟକୁ ଯାଇ ସାରିଲେଣି । ଗଲାବେଳେ

Digitized by srujanika@gmail.com

ନଣନ୍ଦେଇଙ୍କୁ ଖୁସି କରିବା ପାଇଁ ଏକ ମଧୁର ମନ୍ତବ୍ୟ ଦେଇଗଲେ ମୋତେ ଲକ୍ଷ୍ୟ କରି । 'ଧାଡ଼ିଏ ଲେଖିବାର କ୍ଷମତା ନାହିଁ, ଆଉ ବଚନିକା ଦେଲାବେଳକୁ ସମୟ ସରୁନାହିଁ ।'

'ଭାଉଜ ଯାଉଛି । କାଲି ନିଶ୍ଚୟ ଆସିବେ' କହି ରମଣୀରଞ୍ଜନ ଆଉ ମୋ ମୁହଁକୁ ନ ଚାହିଁ ସିଧା ଚାଲିଲେ ସଦର ଫାଟକ ଆଡ଼େ । ସତେ ଯେପରି ମୁଁ ହେଉଛି ଏ ମନ୍ଦିରର ସିଂହଦ୍ୱାରରେ ଥିବା ସିଂହଟିଏ ।

* 'ସକାଳ' ପୂଜାସଂଖ୍ୟା – ୧୯୯୪

Digitized by srujanika@gmail.com

# ପ୍ରତିକ୍ରିୟା

ଭୋଦୁଅର ପାଗ । କ୍ଷଣେ ବର୍ଷା ଓ କ୍ଷଣେ ନିଗଡ ଖରା । ଦୁଇଦିନର ପ୍ରବଳ ଝଡ଼ି ପରେ ସକାଳୁ ଟାଇଁଟାଇଁଆ ଖରାଟା ହୋଇଛି । ବାବୁ ସ୍ୱାଭିମାନ ରାୟ ତାଙ୍କ ନୂତନ ନିଯୁକ୍ତିରେ 'ଆଳି'କୁ ଜଗତପୁରରୁ ବସ୍ ଧରିଲେ ।

କଥିତ ଅଛି, ଜଗତପୁରରୁ ପଟ୍ଟାମୁଣ୍ଡାଇ ଗଲାବେଳେ କୁଆଡ଼େ ଅନେକ ଗର୍ଭଧାରିଣୀ ମା' ସୁଖପ୍ରସବ କରି ପକାନ୍ତି ସେ କାଳର ସରକାରୀ ରାସ୍ତାର ରକ୍ଷଣାବେକ୍ଷଣର ବିଶେଷ ବ୍ୟବସ୍ଥା ହେତୁ । ସେ ସମୟର 'ନିଆଁଖୁଣ୍ଟା' ଯିଏ ପଢ଼ିଥିବେ ଏ ବିଷୟରେ ତାଙ୍କୁ ଖୁସିରେ ସାକ୍ଷୀ କରି ହେବ । ସେ ଯାହା ହେଉନା କାହିଁକି ସ୍ୱାଭିମାନ ବାବୁ ପଟ୍ଟାମୁଣ୍ଡାଇରେ ପହଞ୍ଚିଲା ବେଳକୁ ତାଙ୍କ ପିଚା ହାଡ଼ ଦୁଇଟି ଅତ୍ୟନ୍ତ ସ୍ପର୍ଶକାତର ହୋଇପଡ଼ିଥିଲେ ।

ସ୍ୱାଭିମାନ ପଶୁଡାକ୍ତରୀ ପାଶ୍ କଲାପରେ, ତାଙ୍କ ପ୍ରଥମ ନିଯୁକ୍ତିରେ, ଆଳିରେ ଖୋଲିଥିବା ନୂତନ ପଶୁଡାକ୍ତରଖାନା ଦାୟିତ୍ୱ ତୁଲାଇବା ପାଇଁ ଯାଉଛନ୍ତି । ମନରେ ଅନେକ ଉତ୍ସାହ । ଦେଶ ସ୍ୱାଧୀନ ହେବାର ପ୍ରଥମ ଦଶନ୍ଧି ମଧ୍ୟରେ ଏ ଦେଶର ଅନେକ ଯୁବକଙ୍କ ମନରେ ଯେଉଁ ଉନ୍ମାଦନା ଓ ଉତ୍ସାହ, ଦେଶ ଗଠନ ପାଇଁ, ସ୍ୱାଭିମାନଙ୍କ ଉତ୍ସାହ ସେଥିରୁ କିଛି ଭିନ୍ନ ନ ଥିଲା । ତେଣୁ ଆଜି ଭଳି ସେ ସମୟର ଏକ ଅଗମ୍ୟ ସ୍ଥାନକୁ ଯିବା ପାଇଁ ମନରେ କୌଣସି ଦ୍ୱନ୍ଦ୍ୱ ମଧ୍ୟ ନ ଥିଲା ।

କାମ କରିବାକୁ ହେବ, ସମାନ ଭାବରେ, ସବୁ ଜାଗାରେ, ଦାୟିତ୍ୱପୂର୍ଣ୍ଣ ଭାବରେ । ଉତ୍ସାହର ସହିତ କାମ କରିବାକୁ ହେବ, ଦେଶକୁ ପ୍ରଗତିର ପଥରେ ଆଗେଇ ନେବାକୁ ପଡ଼ିବ । ଏହା ହିଁ ଥିଲା ମୁଖ୍ୟ ଆଭିମୁଖ୍ୟ, ସବୁରି ସେ ବେଳେ । ସୁତରାଂ, ସେତେବେଳେ ସ୍ଥାନ, ସୁବିଧା, ଅସୁବିଧା, ଏ ଚିନ୍ତା ଥିଲା ଗୌଣ । ଏବେ ଚାକିରି ଆରମ୍ଭରୁ କିପରି ମନଲାଖି ଏକ ସୁବିଧା ଜାଗା, ବିଶେଷଭାବରେ ରାଜଧାନୀ ଭିତରେ ହେବାପାଇଁ କି ଘୋଡ଼ାଦୌଡ଼ ! ଏବଂ ସେଥିପାଇଁ ରାଜନୀତି କରୁଥିବା ଲୋକଙ୍କୁ ଜନସେବା ନାମରେ ଏଭଳି ଏକ ମଉକା ଏତେ ସୁବିଧାରେ ମିଳିଯାଉଛି ଯେ ସେମାନଙ୍କୁ ମଧ୍ୟ ରାଜଧାନୀ ଛାଡ଼ି ସୁଦୂର ମଫସଲକୁ ଯିବାର

Digitized by srujanika@gmail.com

ଅବକାଶ ମିଳୁ ନାହିଁ । ବର୍ତ୍ତମାନ ଭଳି ସେ ସମୟରେ ରାଜନୀତି କର୍ମୀମାନଙ୍କର ରାଜକର୍ମଚାରୀଙ୍କ ନିଯୁକ୍ତି ଓ ବଦଳି ସମ୍ପର୍କରେ ଆଦୌ ଚିନ୍ତା ନ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସମୟର ଆବର୍ତ୍ତନରେ ବର୍ତ୍ତମାନର ଅବସ୍ଥା ଯାହା ହେଉନା କାହିଁକି, ସେତେବେଳେ କବି-ବର୍ଣ୍ଣିତ ବରାହ ପୂଜିତ ବାଲି ପୂର୍ଣ୍ଣ ଆଳି, ତଥା ଆଳି ରାଜାଙ୍କ ବିଷୟରେ ବର୍ଣ୍ଣିତ ଅଦ୍ଭୁତ ସାହସିକ କଥାମାନ ଶୁଣିଲେ କାହାର ଅବା ସେ ସ୍ଥାନ ଦେଖିବାକୁ ଆଗ୍ରହ ନ ଜନ୍ମିବ ?

ଲୋକେ କହନ୍ତି, ଆଳି ରାଜାଙ୍କର ଏକ ସର୍କସ ପାର୍ଟି ଥିଲା, ଯେଉଁଥିରେ କି ସେ ନିଜେ ବାଘଖେଳ ଦେଖାଉଥିଲେ । ବିନା ଚାବୁକ ବା ରଡ୍‌ରେ ସେ ବାଘ ସହିତ ଖେଳୁଥିଲେ । ବାଘ ପାଟିରେ ହାତ ପୂରାଉଥିଲେ । ଓଡ଼ିଶାର ପାଲା ସଂସ୍କୃତିକୁ ତାଙ୍କର ଦାନ ଥିଲା ଅସୀମ । ତରଡ଼ିପାଳ ପ୍ରସିଦ୍ଧ ପାଲାଗାୟକ ନାଥ ବଂଶ ପଛରେ ତାଙ୍କର ଉତ୍ସାହ ଥିଲା ଅତୁଳନୀୟ । ତାଙ୍କ ବିଚାର ମଧ୍ୟ ଥିଲା ବେଶ୍ ଉପଭୋଗ୍ୟ ।

ଜନଶ୍ରୁତି କହେ, ଥରେ ତାଙ୍କ ଅଞ୍ଚଳର ଡେରାବିଶ ତହସିଲଦାରଙ୍କ ବିରୁଦ୍ଧରେ ଅର୍ଥ ତୋଷାରପାତ ଖବର ପାଇ ସେ କୁଆଡ଼େ ହଠାତ୍ ସରଜମିନ ତଦନ୍ତ କରିବାକୁ ଡେରାବିଶ କଚେରିରେ ଡେ଼ରା ପକାଇ ଦେଲେ । ତହସିଲଦାର ବାବୁ ଅଚାନକ ରାଜାସାହେବଙ୍କ ଆଗମନରେ ଅତ୍ୟନ୍ତ ବ୍ୟସ୍ତ ହୋଇପଡ଼ିଲେ । ରାଜାସାହେବଙ୍କୁ ଖୁସି କରାଇ ନ ପାରିଲେ ଚାକିରି ତ ଯିବ, ପୁଣି ତାହା ଉପରେ 'ବେଡ଼ି ଉପରେ କୋରଡ଼ା' ମଧ୍ୟ ହେଲେ ହେଲା । ରାଜାସାହେବ ବେଶ୍ ଭୋଜନପ୍ରିୟ ଓ ମାଂସାଶୀ । ତେଣୁ ତୁରନ୍ତ ବଛା ବଛା ଦୁଇଟା ଖାସିର ବ୍ୟବସ୍ଥା କରାହେଲା ।

ରାଜାସାହେବ ଯେଉଁଠି ଡେରା ପକାନ୍ତି, ସେଠି ପ୍ରଥମେ 'ଆମ୍ ଦେୱାନୀ' ବସେ । ପ୍ରଜାମାନଙ୍କର ସୁବିଧା ଅସୁବିଧା ବୁଝାଯାଏ । ରାଜାସାହେବଙ୍କୁ ଅତି ନିକଟରେ ପାଇ ପ୍ରଜାଏ ତାଙ୍କ ବହୁଦିନରୁ ଥାକମଡ଼ା ହୋଇଥିବା ଗୁହାରୀ ସବୁକୁ ଖୋଲି ଦିଅନ୍ତି ଖୋଲା ଦରବାରରେ । ସଙ୍ଗେ ସଙ୍ଗେ ନିଷ୍ପତ୍ତି ହୋଇଯାଏ ସେଇଠି, ଆଜିକାଲିକାର 'କ୍ୟାମ୍ପକୋର୍ଟ' ପରି ।

'ଦେୱାନୀ ଆମ୍' ପରେ ପରେ ଠା'ପାଣିର ବ୍ୟବସ୍ଥା ହେବା କଥା । ସେତିକି ବେଳକୁ ଖୁଆଇ ପିଆଇ ଖୁସ୍ କରାଇଦେଲେ ହୁଏତ ରାଜାସାହେବ ଆଉ ଅଭିଯୋଗ ତଦନ୍ତ ନ କରି ଖାଦ୍ୟପାନୀୟ ପାଇଁ ତହସିଲଦାର ବାବୁଙ୍କୁ

Digitized by srujanika@gmail.com

ଏକ ପ୍ରଶଂସାପତ୍ର ଦେଇ ଚାଲିଯିବେ । ସେଇ ହିସାବରେ ରୋଷେଇବାସର ବ୍ୟବସ୍ଥା ହେଲା । ନାମକରା ସୂପକାରଙ୍କର ନିଯୁକ୍ତି କରାଗଲା ।

ତହସିଲଦାର ମହାଶୟ ରାଜାଙ୍କ ଖୋଲା ଦରବାରରେ ରାଜାସାହେବଙ୍କୁ ସାହାଯ୍ୟ କରୁଛନ୍ତି ନିଧଡ଼କ ଭାବରେ । ହଠାତ୍ ବେଠିଆ ସରଦାର ରାଜୁସିଂହ ଚୁପ୍ କରି ତହସିଲଦାରଙ୍କୁ ଡାକିଲେ । ତହସିଲଦାର ଯାଇ ଯାହା ଶୁଣିଲେ, ସେଥିରେ ତାଙ୍କ ମୁଣ୍ଡରେ ସହସ୍ର ଶିଳପୁଆର ପ୍ରହାର ଯେପରି ହେଲା । ସୂପକାର ଖବର ପଠାଇଛି, ସାଗୁଆତିଟା କସୁ କସୁ ଲାଗି ଯାଇଛି । ସର୍ବନାଶ .... ! ତାକୁ ସଜାଡ଼ିବାକୁ ଯଥେଷ୍ଟ ଗୁଆଘିଅର ପ୍ରୟୋଜନ । ତହସିଲଦାର ତାଙ୍କ ପତ୍ନୀଙ୍କ ଉପରକୁ ସିକାରେ ଝୁଲୁଥିବା ଗୁଆଘିଅ ଠେକିଟାକୁ ନେଇଯିବାକୁ କହିଦେଇ ମଇଦାନ ଦୌଡ଼ିଲେ ତଲବଟାର ମୁକାବିଲା କରିବା ପାଇଁ । ସୂପକାର ଠେକିକ ଯାକ ଘିଅ, ପ୍ରାୟ କେତିକୀ ଦୁଇ ସେର ହେବ, ସାଗୁଆତି ତରକାରୀରେ ଢାଳି ଦେଲେ । ଦୁଇ ସେର ଝରମରା ଗୁଆଘିଅର ବାସନାରେ ତରକାରୀ ଲାଗିଯିବାର ଗନ୍ଧ କୁଆଡ଼େ ମିଳେଇ ଗଲା । ସେଥିରେ ପୁଣି ରାଜାସାହେବଙ୍କ ବିଶେଷ ଆଗ୍ରହ ଥିବା କଞ୍ଚା ଅମୃତଭଣ୍ଡା କସା ହୋଇ ପଡ଼ିଛି । ଆଉ ସାଗୁଆତି ତିଅଣର ମଜା ଦେଖ ।

ଠିକଣା ସମୟରେ ଠା' ପାଣିର ବ୍ୟବସ୍ଥା ହେଲା । ସାମନ୍ତମାନଙ୍କ ଗହଣରେ ସାଗୁଆତି ତିଅଣଟାକୁ ଚାଖୁ ଚାଖୁ ରାଜାସାହେବ ପଚାରିଲେ — ଆରେ ! ଆଜିର ସୂପକାର କିଏ ?

ଏ କଥା ଶୁଣି ସୂପକାରଙ୍କ ମୋଟ କଳକଳ ଡାକିବାକୁ ଆରମ୍ଭ କଲା । ହେଲେ ପୋଖରୀପାଣି ଯିବାପାଇଁ ଡର କାହିଁ ? ଅତି ସନ୍ତର୍ପଣରେ ଦୁଇହାତ ଯୋଡ଼ି ସଫେଇ ଦେବାକୁ ଆରମ୍ଭ କଲେ କୌଣସି ପ୍ରଶ୍ନକୁ ଅପେକ୍ଷା ନ କରି ।

'ହଜୁର, ଶୁଣିଥିଲି ମଣିମାଙ୍କର ଘିଅରେ ଭାରି ପ୍ରିୟ । ତହସିଲଦାର ବାବୁଙ୍କ କଥାନୁସାରେ ଦୁଇ ସେର ଗୁଆଘିଅରେ ସାଗୁଆତିଟା କସି ଦେଇଛି । ସେଥିପାଇଁ ...'

'ଆରେ, ସେଇଆ କହୁନାହୁଁ ! ଏ ତହସିଲଦାରଟା ଗୋଟାଏ ଶକତ ଖାଉ । ଏମିତି ଖାଇ ଖାଇ ତା'ର ଅଭ୍ୟାସ ହେଇଯାଇଛି । ତାକୁ ଏ କୋଡ଼ିଏ ଟଙ୍କା ବେତନ କିପରି କୁଳେଇବ ? ସେଇଥିପାଇଁ ତହବିଲ୍‌ରୁ କିଛି ମାରିଛି । ଯାହା ମାରିଛି ସବୁ ଇମିତି ଖାଇ ଦେଇଥିବ । ଆଉ କ'ଣ ଦେବ ? ଛାଡ଼, ଖାଇ ତ ଦେଇଛି, ଆଉ ତା'ଠାରୁ ଆଦାୟ କ'ଣ କରିବି ତଦନ୍ତ କରି ? କିଓ, ସତ ନା ମିଛ ? ଜନୈକ ସାମନ୍ତଙ୍କ ମୁହଁକୁ ଚାହିଁ ରାଜାସାହେବ ବାମ ହାତରେ ବାଘୁଆ ନିଶଟାକୁ ସାଉଁଳୁ ସାଉଁଳୁ କହିଲେ' ।

Digitized by srujanika@gmail.com

ସେତେବେଳକୁ ତହସିଲଦାର ମଦନ କାନଗୋଇଙ୍କ ଶ୍ରମଝାଳ ବାହାରିବାରେ ଲାଗିଛି । ପ୍ରାୟ ଗାଧୋଇ ପଡ଼ିଲେଣି । ହେଲେ, ରାଜାସାହେବଙ୍କ ଶେଷ ବାକ୍ୟରେ ଦେହଟା ଶୀତଳ ବୋଧ ହେଲା ଦଲକାଏ ପବନ କଚେରି ଘର ଭିତରକୁ ପଶି ଆସିବାରୁ । ଲମ୍ବା ହୋଇ ପଡ଼ିଗଲେ ରାଜାସାହେବଙ୍କ ଠା'ପାଣି ଆଗରେ । 'ହଜୁରଙ୍କ ବିଚାରକୁ ସହସ୍ର ଫଣୀର ମଧ ଭାଷା ନାହିଁ ପ୍ରଶଂସା କରିବା ପାଇଁ । ମୁଁ ବା କି ଛାର! ଅଧମର ପେଟକୁ ଚାହିଁଲେ ଆପଣେ । ତା'ର ପିଲାମାନଙ୍କ ଜୀବନ ରକ୍ଷା କଲେ ମଣିମା', କହି ଶହେଥର ମୁଣ୍ଡ କଚାଡ଼ିଲେ ।

ରାଜାସାହେବ ଆହୁରି ଖୁସି । ତହସିଲଦାରଙ୍କ ବେତନ କୋଡ଼ିଏ ଟଙ୍କାରୁ ଶହେ ଟଙ୍କାକୁ ବୃଦ୍ଧି କରାହେଲା । ନଚେତ୍ ତା'ର ପିଲାମାନେ ଚଳିବେ କିପରି ? ଯାହା ପାଇବେ କାନଗୋଇତ ସବୁ ଗର୍ଭାୟ ସ୍ୱାହା କରିବେ । ଅଭାବରୁ ସ୍ୱଭାବ ନଷ୍ଟ କରିବେ । ତହବିଲ୍ ତୋଷରପାତ କରିବେ ।, ତେଣୁ ଆଦେଶ ହେଲା – 'ଶହେ ଟଙ୍କାରୁ ପଚାଶ ଟଙ୍କା ନଗଦ ତହସିଲଦାର ପାଇବେ ଓ ବାକୀ ପଚାଶ ଟଙ୍କା ତହସିଲଦାରଙ୍କ ଧର୍ମପତ୍ନୀ ଶ୍ରୀମତୀ ତାରାଦେଈଙ୍କ ନାମରେ ଡାକରେ ପଠାଯିବ ତାଙ୍କ ପିଲାମାନେ ଚଳିବା ପାଇଁ ପ୍ରତି ମାସରେ । ପ୍ରମାଣସ୍ୱରୂପ ଡାକ ରସିଦ ତାଙ୍କ ନିକଟରେ ପ୍ରତି ମାସରେ ଦାଖଲ ହେବ ।'

ଏଭଳି କିମ୍ବଦନ୍ତୀମାନଙ୍କର ସ୍ମୃତିଚାରଣ କରୁ କରୁ ରାୟବାବୁ, ପଟ୍ଟାମୁଣ୍ଡାଇରୁ ଆଜି ରାସ୍ତାରେ, ପାଦ ଟଳଟଳ ହୋଇ ମଧ, ଚିକିଟା ମାଟିରେ ପାଦର ଆଙ୍ଗୁଠିଗୁଡ଼ିକୁ ଯୋରରେ ବଙ୍କେଇ, ଚାପି ଚାପି ଚାଲିଥାନ୍ତି । ୧୯୫୫ ମସିହାର ସର୍ବଗ୍ରାସୀ ବନ୍ୟାର ପରିଷ୍କାର ଚିହ୍ନ ଏବେ ମଧ ଏ ରାସ୍ତାରୁ ବୁଝା ପଡୁଥାଏ । ସେ ବନ୍ୟାରେ ଆଜି ରିଂବନ୍ଧ ଘାଇ ଭଙ୍ଗାର କରାଳ ଦୃଶ୍ୟ, ବନ୍ୟାଞ୍ଚଳ ଲୋକ ହିସାବରେ ତଥା ୧୯୫୫ ମସିହା ବନ୍ୟାର ପୁନର୍ବାସ କାର୍ଯ୍ୟରେ ପ୍ରତ୍ୟକ୍ଷ ଅଭିଜ୍ଞତା ହାସଲ କରିଥିବା ଯୁବକ ସ୍ୱାଭିମାନଙ୍କ ଆଖି ଆଗରେ ଜଳଜଳ ଦେଖାଯାଉଥାଏ – ଏଠାରେ ଅବସ୍ଥା ସେତେବେଳେ କ'ଣ ହୋଇଥିବ!! ପତ୍ରପୁର ଘାଟ ପରଠାରୁ କୋଶେ ବାଟ ପୂରା ଦମା ଫୁଟି ରହିଥାଏ କଟକ-ଚାନ୍ଦବାଲି ସଡ଼କ । ଚାଲୁ ଚାଲୁ ବନ୍ୟାର ପ୍ରକୋପ ଓ ଲୋକଙ୍କ ଦୁର୍ଦ୍ଦଶା କଥା ଭାବୁ ଭାବୁ ସ୍ୱାଭିମାନ୍ ବେଳେ ବେଳେ ଶରୀର ଓ ସଡ଼କ ମଧରେ ସଂଯୋଗ ହରାଇ ଏପଟ ସେପଟ ଦୁଇ ଚାରି ପାହୁଲ କାଦୁଅରେ ହଲଚଲ ହୋଇଗଲେ, ମୋଟିଆ ଭୋଇ 'ବାବୁ! ସମ୍ଭାଳି ପାହୁଲ ପକାନ୍ତୁ, ଏମିତି ରାସ୍ତାରେ ଚାଲିବାର ଅଭ୍ୟାସ ନ ଥିବ ଆପଣଙ୍କର' ବୋଲି ତାଗିଦ୍ କରି ଦେଉଥାଏ । ସେ'ବା ଜାଣିବ କାହିଁକି ଯେ, ବାବୁ ଜଣକ

Digitized by srujanika@gmail.com

ମଧ୍ୟ ତା'ରି ଭଳି ଏକ ଚିର ପରିତ୍ୟକ୍ତ ବନ୍ୟା ପ୍ରପୀଡ଼ିତ ଏକ ତ୍ରିକୋଣ ଭୂମି ଅଞ୍ଚଳର ଲୋକ ବୋଲି ।

ସେ ଯାହାହେଉ—'ଶାସନ' ଠାରୁ ପ୍ରକୃତ ବାଲିପୂର୍ଣ୍ଣ ଆଳିର ଭୂମିସ୍ପର୍ଶ କରି ସ୍ୱାଭିମାନ ଏକ ଦୀର୍ଘ ନିଃଶ୍ୱାସ ପକାଇଲେ । ବାଟ ଆଉ , ଅଧକୋଶ ଖଣ୍ଡେ ଅଛି ଆଳିର ସଦର ମହକୁମାରେ ପହଞ୍ଚିବାକୁ । ମୋଟିଆ ଭୋଇଙ୍କ ପରାମର୍ଶ କ୍ରମେ ରାସ୍ତା କଡ଼ ଗଡ଼ିଆରେ ଗୋଡ଼ହାତ ଧୁଆଧୋଇ ହୋଇ, କଟକରୁ ସଦ୍ୟ କିଣା ଯାଇଥିବା ବାଟା ଯୋଡା ହଳକ ମଡ଼ାଇ ଫୁଲ୍ ପ୍ୟାଣ୍ଟର ମୋଡ଼ା ଅଂଶଗୁଡ଼ିକୁ ତଳକୁ ଖସାଇ ଦେଇ, ପଛ ପକେଟରୁ କଟିକୀ ଶିଙ୍ଗ ପାନିଆ ଖଣ୍ଡକ କାଢ଼ି ସାମାନ୍ୟ ଟେରି ବାଗେଇ ଦେଲେ ପଶୁଡାକ୍ତର ସ୍ୱାଭିମାନ ବାବୁ । ଇତି ମଧ୍ୟରେ ଭୋଇଏ ମଧ୍ୟ ରାସ୍ତାକଡ଼କୁ ବାମ ଗୋଡ଼ର ଟିପ ଉପରେ ଭାରାଦେଇ ଡାହାଣ ଗୋଡ଼ଟାକୁ ଟିକିଏ ଫାରଚେଇ ଆଗକୁ ବଢ଼େଇ ବସିଗଲେ, 'ଏକ' କାମଟାକୁ ବଢ଼େଇ ଦେଲେ ପେଟଟାକୁ ହାଲୁକା କରି ଦେବା ପାଇଁ । ସେ କାମ ସାରି, ଗୋଡ଼, ମୁହଁ, ହାତ ଧୋଇ, ମୁଣ୍ଡର ଠେକାଟା ଖୋଲି ସେଥିରେ ଚିକ୍କଣ କରି ପୋଛାପୋଛି ହୋଇପଡ଼ିଲେ ଭୋଇଏ, ଆଉ କାନ ଉପରୁ ପିକାଟାକୁ କାଢ଼ି, ଅଣ୍ଟାରେ ଗେଞ୍ଜା ହୋଇଥିବା ସୋଲରେ ଝକମକିରୁ ନିଆଁ ଗୁଳା ପକାଇ, ଜବର କରି ଭିଡ଼ିଦେଲେ ଦୁଇ ଚାରି ଢୋକ । ତାପରେ ସାଷ୍ଟାମ ହୋଇ ବାବୁଙ୍କୁ ନିର୍ଦ୍ଦେଶ ଦେଲା ଚାଲିବାକୁ, ବାଟ ଭାଙ୍ଗି ଆଗରେ ଦେଖା ଯାଉଥିବା ବିରାଟ ଗଛ ଆଡ଼କୁ ମୁହାଁଉଁ ମୁହାଉଁ ।

—'ବାବୁ, ନିଆଳ ହାଟ ଦେଇ ପଶିଯିବା ସିଧା ଇସ୍କୁଲ୍ ପାଖକୁ । ତାରି ସାମନା ଘରେ ପଶୁଡାକ୍ତରଖାନା । ସେଇ ଘରେ ଏବକାର ଡାକ୍ତର ବାବୁ ବି ରହୁଛନ୍ତି । ଡାକ୍ତର ବାବୁ ଜଣକ ଭାରି ଭଲ ଲୋକ, ଛ'ମାସ ବି ହେଇନି ଆସିକରି ଡାକ୍ତରଖାନା ଖୋଲିବାର । ଆପଣ ତାଙ୍କର ସେଇଠି ରହିଯିବେ । କାହିଁକି ଏକଣାଟାରେ ନିଛାଟିଆ ବଙ୍ଗଳାକୁ ଯିବା ? ପୁଣି ବୁଲାଣି ପଡ଼ିବ ମାଇଲିଏ' ।

—'ଯେପରି ସୁବିଧା ମନେ କରୁଛ କର । ମୁଁ ତ ଏଠାରେ ନୂଆ ।' ମୋଟିଆକୁ ଅନୁସରଣ କରୁ କରୁ ସ୍ୱାଭିମାନ କହିଲେ ।

—'ନାହିଁ ବାବୁ, ଆପଣଙ୍କର ଏଠି କିଛି ଅସୁବିଧା ହେବ ନାହିଁ । ଦେଖିବେନି ଆମ ଏଠିକା ଲୋକେ କେତେ ସ୍ନେହୀ । ଆପଣଙ୍କ ଡାକ୍ତରଖାନାକୁ ଲାଗି ସେ ଯୋଉ କୁନାଇନା ଅଛନ୍ତି ନା ସେ ତ ଆପଣଙ୍କୁ ଚକେଇ ନେବେ, ଆଉ କାହା କଥା କ'ଣ କହିବା' ।

Digitized by srujanika@gmail.com

ଏହିପରି ଗପସପ କରୁ କରୁ ଅଧଘଣ୍ଟାକ ଭିତରେ ମୋଟିଆ ଭୋଇ ନେଇ ପହଞ୍ଚାଇ ଦେଲା ପଶୁଡାକ୍ତରଖାନାରେ । ଭଗବାନ ବାବୁ, ବର୍ତ୍ତମାନର ପଶୁଡାକ୍ତର, ଦାଣ୍ଡପିଣ୍ଡାରେ ବସିଥିଲେ । ଖୁସି ହୋଇ ଏକା ଲମ୍ଫରେ ଆସି ସ୍ୱାଭିମାନଙ୍କୁ ପାଛୋଟି ନେଲେ । ସେ ଆଗରୁ ଜାଣିଥିଲେ, ତାଙ୍କ ବଦଳରେ ଆସୁଥିବା ସ୍ୱାଭିମାନ ବାବୁ ଏଇ କେତେଦିନ ଭିତରେ ପହଞ୍ଚିବେ । ମୋଟିଆ ଭୋଇ ସାଧାରଣତଃ ଏଇ ସରକାରୀ ଚାକିରିଆଙ୍କର ବୋକଚା ଧରି ପଟ୍ଟାମୁଣ୍ଡାଇରୁ ବାଟ କଢ଼ାଇ ଆଣେ । ଜଗତପୁରରୁ ବାହାରୁଥିବା ବସ୍ ପଟ୍ଟାମୁଣ୍ଡାଇରେ ପହଞ୍ଚିଲେ ମୋଟିଆ ଭୋଇ ହାଜର । ସରକାରୀ ଚାକିରିଆ କେହି ଯାତ୍ରୀ ଥିଲେ ଆଳିକୁ ଯିବା ପାଇଁ, ସେ ଆଗେଇ ଯାଏ ତାଙ୍କୁ ସାହାଯ୍ୟ କରିବାକୁ । ସତେ ଯେପରି ମୋଟିଆ ଭୋଇ ଏ ଅଗମ୍ୟ ଅଞ୍ଚଳର ଭାରବାହୀ ପଶୁଟିଏ । ସରକାରୀ ଲୋକଙ୍କ ମୋଟ ବୋହି ପଟ୍ଟାମୁଣ୍ଡାଇରୁ ଆଳିକୁ ଚାଲେ । ସୁତରାଂ ମୋଟିଆକୁ ଦେଖି ଭଗବାନ ବାବୁଙ୍କର ସ୍ୱାଭିମାନଙ୍କୁ ଚିହ୍ନିବାରେ କୌଣସି ଅସୁବିଧା ହେଲା ନାହିଁ । ସତେ ଯେପରି ଦୁଇବନ୍ଧୁ ଅନେକ ଦିନ ପରେ ମିଶୁଛନ୍ତି—ସେ ଦୃଶ୍ୟ ଦେଖିଥିବା ଲୋକେ ତାହା ହିଁ ମନେକଲେ ।

ସ୍ୱାଭିମାନଙ୍କ ରହଣି ଭଗବାନ ବାବୁଙ୍କ ବାସସ୍ଥଳୀରେ ହେଲା । ଭଗବାନବାବୁ ବଦଳି ଆଦେଶ ପାଇବା ପରଠାରୁ ଆଳି ଛାଡ଼ି ଯିବାକୁ ମଧ୍ୟ ସମସ୍ତ ପ୍ରସ୍ତୁତି କରିସାରିଥିଲେ । ପରଦିନ ହିଁ ଦାୟିତ୍ୱ ହସ୍ତାନ୍ତର ହୋଇଗଲା ।

ତା'ପରଦିନ, ଭଗବାନ ବାବୁଙ୍କୁ ବିଦାୟ ଦେବାପାଇଁ ସ୍ୱାଭିମାନ ଶାସନ ଛକ ପର୍ଯ୍ୟନ୍ତ ଯାଇଥିଲେ । ମୋଟିଆ ଭୋଇ କହିବା ମୁତାବକ ସ୍ଥାନୀୟ ଲୋକେ ଅତ୍ୟନ୍ତ ସ୍ନେହୀ ! ପଚାଶ ଜଣ ସନ୍ତ୍ରିକ୍ଷ ଲୋକ ମଧ୍ୟ ସାଥିରେ ଯାଇଥିଲେ ବଳେଇ ଦେବାପାଇଁ ।

ସ୍ୱାଭିମାନ ଜଏନ୍ କରିବା ଏକ ସପ୍ତାହ ମଧ୍ୟରେ ବେଶ୍ ଜମେଇ ଦେଲେ । ତାଙ୍କର ଉପସ୍ଥିତି, ମୁନ୍‌ଲାଇଟ୍ କ୍ଲବର ଫୁଟବଲ, ଭଲିବଲ ପଡ଼ିଆଠାରୁ ଆରମ୍ଭ କରି ସ୍ଥାନୀୟ ବରାହଜୀଉ ନାଟ୍ୟସଙ୍ଘର ଆଖଡ଼ା ଘରେ ଦେଖିବାକୁ ମିଳିଲା ଡାକ୍ତରଖାନାର ନିର୍ଦ୍ଦିଷ୍ଟ କାର୍ଯ୍ୟ ନିର୍ଘଣ୍ଟ ପରେ । ରାୟବାବୁ ଜଣେ ସର୍ବଗୁଣାଧାରୀ ଯୁବକ । ତେଣୁ ସେଠାକାର ଯୁବସମ୍ପ୍ରଦାୟ ମଧ୍ୟରେ, ମାତ୍ର ଏଇ କେଇଟା ଦିନ ଭିତରେ ଜଣେ ହୋଇପଡ଼ିଲେ ସେ ।

ଡାକ୍ତର ବାବୁ ଅବିବାହିତ ହୋଇଥିବାରୁ, ଏଠାରେ କାର୍ଯ୍ୟଭାର ଗ୍ରହଣ କରିବା ପରେ, ରହିବା ଘରର ସୁବିଧା ଥିବା ଜାଣି, ପୁଅର ସୁବିଧା ଅସୁବିଧା ବୁଝିବା ପାଇଁ ତାଙ୍କ ମା' ସାନ ଭଉଣୀକୁ ଧରି ଆସି ପହଞ୍ଚିଛନ୍ତି ।

Digitized by srujanika@gmail.com

ପ୍ରକାଶ ଥାଉକି, ଆଜିର ପଶୁଡାକ୍ତରଖାନା ପାଇଁ ସରକାରୀ ଜମି ଓ ଘରର ବ୍ୟବସ୍ଥା ହୋଇ ନ ଥିବାରୁ ଆଜି ରାଜାଙ୍କ ପୂର୍ବତନ ତହସିଲ ଘର, ଯାହାକି ସେତେବେଳେ ଅଞ୍ଚଳ ଅଧିକାରୀଙ୍କ ମାର୍ଫତରେ ରହିଥିଲା, ଏକ ବିରାଟ ଖଞ୍ଜା–ଡାକ୍ତରଖାନା ତଥା ଡାକ୍ତରଙ୍କ ବ୍ୟବହାର ପାଇଁ ଛାଡ଼ି ଦିଆଯାଇଥିଲା । ଭଗ୍‌ବାନ ବାବୁ ସେଇଠି ତାଙ୍କ ପିଲାପିଲି ନେଇ ରହୁଥିଲେ ଓ ସ୍ୱାଭିମାନ ମଧ୍ୟ ସେହିଭଳି ସେ ଘରେ ଚଳିବାକୁ ବନ୍ଧୁଭାବରେ ଉପଦେଶ ଦେଇ ଯାଇଥିଲେ । ହେଲେ ଯେହେତୁ ଏ ଘର ସେ କାଳର ଅଞ୍ଚଳ ଅଧିକାରୀଙ୍କ ମାର୍ଫତରେ ଏବଂ ସେଥିପାଇଁ ପ୍ରତିଥର ଡାକ୍ତର ବଦଳି ପରେ ନୂତନ ଡାକ୍ତରଙ୍କୁ ସେ ଘରେ ରହିବା ପାଇଁ ଅଞ୍ଚଳ ଅଧିକାରୀ ମହାଶୟଙ୍କୁ ଅର୍ଜି କରିବାର ଆବଶ୍ୟକତା ଅଛି, ଭଗବାନ ବାବୁ ଯିବା ପୂର୍ବରୁ ସ୍ୱାଭିମାନଙ୍କୁ କିଛି କହି ନ ଥିଲେ । ସ୍ୱାଭିମାନଙ୍କର ସରକାରୀ ଚାକିରିଆ ହିସାବରେ ଏ ସବୁ ଆଦବ କାଇଦାର ଅଭିଜ୍ଞତା ମଧ୍ୟ ନ ଥିଲା । ଏବେକା ଭଳି ବଦଳି କାଳରେ ସ୍ଥାନୀୟ ଅଧିକାରୀମାନଙ୍କ ଦ୍ୱାରା ବିଦାୟ ଭୋଜିର ବ୍ୟବସ୍ଥା ହୋଇ ନ ଥିଲା ଭଗବାନ ବାବୁଙ୍କ ବିଦାୟ ବେଳେ । ସୁତରାଂ ସେଠାରେ ଥିବା ଅନ୍ୟାନ୍ୟ ସରକାରୀ କର୍ମଚାରୀମାନଙ୍କ ମଧ୍ୟରେ ଜଣାଶୁଣା ହେବାର ସୁଯୋଗ ସ୍ୱାଭିମାନଙ୍କୁ ମିଳି ନ ଥିଲା । ସେମାନଙ୍କ ଘରକୁ ଯାଇ ମଧ୍ୟ ନିଜର ଆବିର୍ଭାବ ସମ୍ପର୍କରେ ଜଣାଇବାକୁ ତାଙ୍କ ମୁଣ୍ଡରେ ଢୁକି ନ ଥିଲା । ନିଜ ଦାୟିତ୍ୱ ଠିକ୍ ସମୟରେ ତୁଲାଇ ଦେବା ପରେ, ବାକି ସମୟତକ, ଯୁବ ସୁଲଭ ଗୁଣରୁ, ସ୍ଥାନୀୟ ଯୁବକମାନଙ୍କ ସାଥିରେ ସମୟ କଟେଇ ଦେଉଥିଲେ ସ୍ୱାଭିମାନ ।

ସେ କାଳରେ ଅଞ୍ଚଳ ଅଧିକାରୀମାନେ ସେ ଅଞ୍ଚଳର ବିଧାତା ବୋଲି ନାମକରଣରୁ ଜଣାପଡ଼େ । ପ୍ରକୃତରେ ତାହା ହିଁ ଘଟଣା । ସେତେବେଳେ ପୁଣି ମାନଗୋବିନ୍ଦ ଅଧିକାରୀ ବୋଲି ଜଣେ ନିଜ ପିତୃଦତ୍ତ ନାମର ଅନୁକୂଳ ପ୍ରବଳ ପ୍ରତାପୀ ଅଞ୍ଚଳ ଅଧିକାରୀ ସେଠାର ଦାୟିତ୍ୱରେ ଥା'ନ୍ତି । ତାଙ୍କ ଅଞ୍ଚଳରେ ଜଣେ ନୂଆ ପଶୁଡାକ୍ତର ଆସି ଜଏନ୍ କଲେଣି ଓ ତାଙ୍କ ଯୁବ ପ୍ରଜାମାନଙ୍କ ସହିତ ଏପରି ଭାବରେ ମିଳିମିଶି ସେମାନଙ୍କର ପ୍ରିୟଭାଜନ ହୋଇ ସାରିଲେଣି ବିଗତ ଏଇ କେତେ ଦିନ ହେବ, ଅଥଚ ତାଙ୍କ ସହିତ ଏକ ସୌଜନ୍ୟମୂଳକ ସାକ୍ଷାତ ମଧ୍ୟ ସେ କଲେ ନାହିଁ ! ସାମାନ୍ୟ ଏକ ପଶୁଡାକ୍ତରର ଏ ତ କମ୍ ସ୍ପର୍ଦ୍ଧା ନୁହେଁ ! ଏଭଳି ଔଦ୍ଧତ୍ୟପୂର୍ଣ୍ଣ ଯୁବକକୁ ଏବହୁଁ ଜବତ୍ ନ କଲେ ଭବିଷ୍ୟତରେ ସରକାରୀ ଅଫିସରଙ୍କର ଚଳଣି ଢାଞ୍ଚାରେ ଏହାର ପ୍ରଭାବ ଯଥେଷ୍ଟ ପଡ଼ିବ । ଲୋକମାନଙ୍କର ବ୍ୟବହାର ସରକାରୀ ଅଧିକାରୀମାନଙ୍କ ପ୍ରତି ହୁଏତ ଅସମ୍ମାନଜନକ ହେବ ବୋଲି ମାନଗୋବିନ୍ଦ ବିଚାରିଲେ ।

Digitized by srujanika@gmail.com

ସକାଳୁ ସକାଳୁ ପିଆଦା ଆସି ହାଜର ସ୍ୱାଭିମାନଙ୍କ ଘର ଆଗରେ । ଡାକ୍ତରଖାନା ବନ୍ଦ ପରେ, ଅଞ୍ଚଳ ଅଧିକାରୀଙ୍କ ସହିତ ତାଙ୍କ ଦପ୍ତରରେ ସାକ୍ଷାତ କରିବାର ନିର୍ଦ୍ଦେଶଟାକୁ ଜାରି କରିଦେଇ ପିଆଦା ବାହାଦୂର ଚାଲିଗଲେ ।

ଏଠାରେ କହି ରଖିବାର କଥା ଯେ, ସେ ସମୟରେ କୌଣସି ଲୋକଙ୍କୁ କୌଣସି କାର୍ଯ୍ୟରେ କେହି ଅଫିସର ଡକାଇଲେ, ଏକ ସାଧାରଣ ଶିଷ୍ଟତା ଥିଲା ଯେ ତାଙ୍କ କାର୍ଯ୍ୟ ସମାପନ କରି ହିଁ ଆସିବାକୁ ନିର୍ଦ୍ଦେଶ ଦିଆଯାଇଥାଏ । ଏବର ଭଳି ଅତର୍କିଆ ହକାରିବା ନ ଥିଲା ।

ସବୁଦିନପରି, ଡାକ୍ତରଖାନା କାମ ସାରି, ସ୍ୱାଭିମାନ ପହଞ୍ଚିଲେ ଅଞ୍ଚଳ ଅଫିସରେ । ଅଧିକାରୀଙ୍କ ମିସଲରେ ତାଙ୍କ ଚାରିପଟରେ ବେଶ୍ ଭିଡ଼ । ତାଙ୍କ ମୁଣ୍ଡଟା ଗରମ ଥିଲା ପରି ଜଣାପଡୁଥିଲା, କାରଣ ରାୟ ବାବୁଙ୍କ ପରି ସମ୍ପୂର୍ଣ୍ଣ ଏକ ଅପରିଚିତଙ୍କର ଉପସ୍ଥିତିରେ ମଧ୍ୟ ଅଧିକାରୀଙ୍କ ଧ୍ୟାନ ତାଙ୍କ ଆଡ଼କୁ ଫେରି ନ ଥିଲା କି ସେ ପ୍ରକୃତିସ୍ଥ ହୋଇ ପାରି ନ ଥିଲେ । ସେ 'ଯାହା ହେଉ, କିଛି ସମୟ ଅପେକ୍ଷା କଲାପରେ ସ୍ୱାଭିମାନ ପାଖରେ ଥିବା ଏକ ଚଉକିକୁ ଟାଣି ଆଣି ବସି ପଡ଼ିଲେ । ଚଉକି ଟଣାର ଶବ୍ଦରେ ଅଧିକାରୀଙ୍କ ଧ୍ୟାନଭଙ୍ଗ ହେଇଗଲା । ତାଙ୍କର ଦୃଷ୍ଟି ସ୍ୱାଭିମାନଙ୍କ ଉପରେ ନିବଦ୍ଧ ହେଲା । ମନେ ମନେ ବୋଧହୁଏ ବିରକ୍ତ ହେଲେ । କିଏ ଏହି ଅର୍ବାଚୀନ ଯୁବକ, ତାଙ୍କ ନିର୍ଦ୍ଦେଶକୁ ଅପେକ୍ଷା ନ କରି ତାଙ୍କରି ସାମନାରେ ଚଉକିଟାକୁ ଭିଡ଼ି ଆଣି ବସି ପଡ଼ିଲା ?' ତତ୍‌କ୍ଷଣାତ୍ ହାକିମୀ ଢଙ୍ଗରେ ପ୍ରଶ୍ନ କଲେ, 'ଆପଣ କିଏ ?'

—'ସାର୍ ମୁଁ ସ୍ୱାଭିମାନ ରାୟ, ଏଠିକାର ପଶୁଡାକ୍ତର ।' ନମସ୍କାର କରୁ କରୁ ସ୍ଥିର ତଥା ବିନମ୍ର ଭାବରେ ଉତ୍ତର ଦେଲେ ।

ଅଧିକାରୀ ମହାଶୟ, କୌଣସି ପ୍ରତିନମସ୍କାର ନ ଜଣାଇ ସେଇ ଅଧିକାରୀଆ ଢଙ୍ଗରେ କହିଲେ, 'ଶୁଣିଲି ଆପଣ କୁଆଡ଼େ ପନ୍ଦର ଦିନ ହେବ ଆସି ଜଏନ୍ କଲେଣି ଅଥଚ ମୋତେ ଜଣାଇ ନାହାନ୍ତି ?'

ଏଭଳି ପ୍ରଶ୍ନରେ ରାୟବାବୁ ସାମାନ୍ୟ ଚକିତ ହୋଇପଡ଼ିଥିଲେ ମଧ୍ୟ ଧୀର ଭାବରେ ଉତ୍ତର ଦେଲେ, 'ଆପଣ ଯାହା ଶୁଣିଛନ୍ତି ତାହା ସତ୍ୟ । ମୋର ଏଠାରେ ଜଏନ୍ କଲା ପରେ ଆପଣଙ୍କୁ ସରକାରୀ ଭାବରେ ଜଣାଇବାର ଯେ ଆବଶ୍ୟକତା ଅଛି ତାହା ମୋତେ ଜଣା ନ ଥିଲା ।'

—'ଆପଣ ଜାଣନ୍ତି ସେ ଘର ଆମର ?' ଅଧିକାରୀଏ ଅଧିକାର ସାବ୍ୟସ୍ତ କଲା ସ୍ୱରରେ କହିଲେ ।

Digitized by srujanika@gmail.com

—'ତାହା ମୋତେ ଜଣା ନାହିଁ । ହେଲେମଧ ସେହି ଘରେ ଡାକ୍ତରଖାନାର ଦାୟିତ୍ୱ ହସ୍ତାନ୍ତର ହୋଇଥିବାରୁ ଓ ମୋ ପୂର୍ବବର୍ତ୍ତୀ ଡାକ୍ତର ସେଠାରେ ସପରିବାର ରହୁଥିବାରୁ ତଥା ଦାୟିତ୍ୱ ହସ୍ତାନ୍ତର ସମୟରେ ସେଭଳି କୌଣସି ସୂଚନା ନ ଥିବାରୁ ମୋର ଅଧିକ କିଛି ଜାଣିବାର ଆବଶ୍ୟକତା ନ ଥିଲା ବୋଲି ମୁଁ ମନେକରେ ।'

ଏଥରକ ସ୍ୱାଭିମାନଙ୍କ ଭାଷାରେ ସାମାନ୍ୟ କଠୋରତା ଥିଲା ପରି ଜଣାପଡୁଥିଲା । ଅଞ୍ଚଳ ଅଧିକାରୀଙ୍କ ଏତାଦୃଶ ଅଶାଳୀନ କଥାବାର୍ତ୍ତା ସ୍ୱାଭିମାନଙ୍କ ଭଳି ସରକାରୀ ଆଦନ୍ କାଇଦାରେ ଅନଭିଜ୍ଞ ଯୁବକଙ୍କୁ ବେଶ୍ ବିବ୍ରତ କରାଇ ଦେଇଥାଏ ।

ଅଧିକାରୀ ମହାଶୟ ଏଭଳି ଉତ୍ତର ବୋଧହୁଏ ଆଶା କରି ନ ଥିଲେ । ଏତେ ଲୋକଙ୍କ ସମ୍ମୁଖରେ ଏଭଳି ଉତ୍ତର ତାଙ୍କଭଳି ଜଣେ ଅଞ୍ଚଳ ଅଧିକାରୀଙ୍କୁ ବଡ଼ ଅପଦସ୍ଥ କରିଦେଲା । ସେ ଖୁବ୍ ଚଡ଼ାଗଳାରେ କହିଲେ, 'ଆପଣ ଜାଣନ୍ତି, ମୁଁ ଚାହିଁଲେ ସେ ଘରୁ ଆପଣଙ୍କୁ ତଡ଼ିଦେବା ସହିତ ଡାକ୍ତରଖାନା ମଧ୍ୟ ଉଠାଇ ଦେଇପାରେ ।'

ସ୍ୱାଭିମାନଙ୍କ ସ୍ୱାଭିମାନ ଉପରେ ଦୁରନ୍ତ ପ୍ରହାର । ଦେହରେ ଯେପରି ସହସ୍ର ଅଗ୍ନି ସ୍ଫୁଲିଙ୍ଗ ଗଳିଗଲା ଭଳି ଲାଗିଲା । ତତ୍କ୍ଷଣାତ୍ ତାଙ୍କ ପାଟିରୁ ବାହାରି ପଡ଼ିଲା, 'ମୁଁ କିନ୍ତୁ ଜାଣେ ଯେ ସେ ଘର ଆପଣଙ୍କର ପୈତୃକ ସମ୍ପତ୍ତି ନୁହେଁ । ସେ ଘରୁ ଡାକ୍ତରଖାନା ଉଠାଇ ଦେବାର କ୍ଷମତା ଯଦି ଆପଣଙ୍କର ଥାଏ, ତାହାହେଲେ ତାର ପରିଣାମ ଆପଣଙ୍କୁ ହିଁ ଭୋଗ କରିବାକୁ ପଡ଼ିବ । ସ୍ଥାନୀୟ ଲୋକଙ୍କ ଦ୍ୱାରା ଆପଣ ସମ୍ବର୍ଦ୍ଧିତ ହେବେ ସେମାନଙ୍କର ପାଦୁକା ଦ୍ୱାରା । ମୋର କିଛି ହେବ ନାହିଁ । ମୁଁ ଚାକିରି କରିବାକୁ ଆସିଛି । ବଙ୍ଗୋପସାଗର ମଧ୍ୟରେ ନିଯୁକ୍ତି ମିଳିଲେ ମଧ୍ୟ ମୁଁ ଯିବାକୁ ପ୍ରସ୍ତୁତ ।'

ସ୍ୱାଭିମାନଙ୍କର ଏତାଦୃଶ ସ୍ପର୍ଦ୍ଧିତ ଉତ୍ତର ଉପସ୍ଥିତ ସମସ୍ତଙ୍କୁ ସ୍ତବ୍ଧ କରି ଦେଇଥିଲା । ମାନଗୋବିନ୍ଦଙ୍କ ଭଳି ଅଞ୍ଚଳ ଅଧିକାରୀଙ୍କ ସାମନାରେ ସ୍ୱାଭିମାନଙ୍କର ଏଭଳି କଥା କହିବା ସମ୍ଭବ ହୋଇ ପାରିଲା କିପରି ? ନିଜ ନିଜ ଭିତରେ ଚୁପୁରୁ ଚାପର ହେବାକୁ ଲାଗିଲେ ।

ଅଧିକାରୀଙ୍କ ମୁଣ୍ଡର ପିତ୍ତ କିନ୍ତୁ ଏଥିରେ ସମ୍ପୂର୍ଣ୍ଣ ଭାବରେ ଖସି ପଡ଼ିଲା । ତାଙ୍କର ଜ୍ଞାନୋଦୟ ହେଲା ବୋଧହୁଏ । ସେ ମିସଲ୍ ଉପରୁ ଓହ୍ଲେଇ ଆସି ସ୍ୱାଭିମାନଙ୍କୁ ଧରି ପକାଇଲେ । 'ମୁଁ ଅତ୍ୟନ୍ତ ଦୁଃଖିତ, ସେଭଳି କିଛି ଉଦ୍ଦେଶ୍ୟ

Digitized by srujanika@gmail.com

ରଖି. ମୁଁ କହି ନ ଥିଲି । କୌଣସି ଏକ ଘଟଣାରେ ମୁଁ ସାମାନ୍ୟ ବିବ୍ରତ ଥିଲି । ଆପଣଙ୍କ ସ୍ୱାଭିମାନରେ ଆଘାତ କରିଥିବାରୁ ମୁଁ ଦୁଃଖିତ । ଅସଲ କଥା ହେଉଛି ସେ ଘରଟା ଉପରେ ସ୍ୱତ୍ୱ ସମ୍ପର୍କୀତ ମାମଲା ଚାଲିଛି ଓ ତାହା ଅଞ୍ଚଳର ଅଧିକାରରେ ରହିଛି, କାଳେ କିଛି ଅସୁବିଧା ହେବ ।' ଏକ ନିଃଶ୍ୱାସରେ ଅଞ୍ଚଳ ଅଧିକାରୀ କହି ପକାଇଲେ !

—'କ'ଣ ଭଗବାନ ବାବୁ ରହୁଥିବା ଅବସ୍ଥାରେ କିଛି ଅସୁବିଧା ହେଉ ନ ଥିଲା ?' ଠିକ୍ ପୂର୍ବଭଳି ଗମ୍ଭୀର ତଥା ଯୋରଦାର କଣ୍ଠରେ ସ୍ୱାଭିମାନ ପ୍ରଶ୍ନ କଲେ ।

—'ଛାଡ଼ନ୍ତୁ ସେ ସବୁ । ଚାଲନ୍ତୁ ଆପଣଙ୍କ ମା'ଙ୍କ ହାତରୁ ଖଣ୍ଡେ ପାନ ଖାଇ ଆସିବା' କହି ମାନଗୋବିନ୍ଦ ସ୍ୱାଭିମାନଙ୍କ ହାତଟା ଭିଡ଼ି ଭିଡ଼ି ଚାଲିଲେ ।

ଚାଲୁ ଚାଲୁ ମାନଗୋବିନ୍ଦ ଉପଦେଶ ଛଳରେ କହିଲେ, 'ଆପଣ ପିଲାଲୋକ । ଦପ୍ତରରେ ଏଭଳି ଉତ୍ତର ଉପରିସ୍ଥ ହାକିମଙ୍କୁ ଦେବା ସରକାରୀ ଆଦବ୍‌କାଇଦା ନୁହେଁ ।'

—'ଆପଣ ଯାହା କହିଲେ ତାହା ହୁଏତ ସତ୍ୟ ହୋଇପାରେ, ହେଲେ ଜଣେ ବହୁ ଅଭିଜ୍ଞ ରାଜସ୍ୱ ଅଧିକାରୀଙ୍କ, ସର୍ବସମକ୍ଷରେ ଅନ୍ୟ ଜଣେ ପଦସ୍ଥ ଅଧିକାରୀଙ୍କୁ ଏପ୍ରକାର ଶିଷ୍ଟାଚାରବିରୁଦ୍ଧ ବ୍ୟବହାର ସରକାରୀ ଆଦବ୍‌କାଇଦା ମଧ୍ୟରେ ଅଛି ବୋଲି ମୋତେ ଜଣା ନ ଥିଲା ।'

ମାନଗୋବିନ୍ଦ ବାବୁ ହସିଲେ କଥାଟା ଶୁଣି । ପୁଣି ଉପଦେଶ ଛଳରେ କହିଲେ, 'ଏତେଟା ରୋକ୍‌ଠୋକ୍ କହିବା କିନ୍ତୁ ଉଚିତ୍ ନୁହେଁ ଡା. ରାୟ । ଏବହୁଁ ସଞ୍ଜତ ନ ହେଲେ ଭବିଷ୍ୟତରେ ଆପଣଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ।'

ଧୀରେ ଧୀରେ ଉଭୟ ସରକାରୀ ପଦାଧିକାରୀ ମାନଗୋବିନ୍ଦ ଓ ସ୍ୱାଭିମାନଙ୍କ ସମ୍ପର୍କ ବେଶ୍ ଘନିଷ୍ଠ ହୋଇପଡ଼ିଲା । ପଶୁଡାକ୍ତରବାବୁ ଅଞ୍ଚଳ ଅଧିକାରୀଙ୍କୁ ମନେ ମନେ ବେଶ୍ ଶ୍ରଦ୍ଧା କଲେ, ନିଜର ତ୍ରୁଟିକୁ ଏତେ ଶୀଘ୍ର ସବୁରି ଆଗରେ ସ୍ୱୀକାର କରିଯାଇଥିବାରୁ । କେତେଜଣ ଏପରି କରିପାରିବେ ? କିନ୍ତୁ ସେ ଜାଣି ନ ଥିଲେ ଯେ ଜଣେ ପରାକ୍ରମୀ ରାଜସ୍ୱ ଅଧିକାରୀଙ୍କର କ୍ଷମତାସାର ଦ୍ୱାରା ପରିବର୍ଦ୍ଧିତ ପ୍ରକୃତିଟା ଏତେ ଶୀଘ୍ର ତାଙ୍କର ଦୁଇପଦ କଥାରେ ମୂଳୋତ୍ପାଟିତ ହୋଇପଡ଼ିଲା ।

Digitized by srujanika@gmail.com

ବୈଶାଖ ମାସର ଖରା । ସାଇଁ ସାଇଁ ଝାଞ୍ଜି ବାଡ଼ାଉଛି । ଝରକା ବାଟରେ ସରୁ ସରୁ ଉତପ୍ତ ବାଲୁକା କଣିକା ପଶି ଆସି ଘର୍ମାକ୍ତ ଶରୀରରେ ସୂଚିବତ୍ ବିଦ୍ଧ କରି ଦେଉଛି । ଡାକ୍ତର ବାବୁ ଘଡ଼ିଆମାଳରୁ ଗୋ-ମଡ଼କ ପାଇଁ ଟୀକା ଦେବାକୁ ଯାଇଥିଲେ, ଆସି କ୍ଳାନ୍ତ ହୋଇ ପୋଷାକ ନ ବଦଳାଇ ଚିତ୍‌କାତ୍ ହୋଇ ପଡ଼ି ଯାଇଛନ୍ତି । ମା' ତାଙ୍କର ପୁଅର ମୁଣ୍ଡ ପାଖରେ ବସି କାଇଁଚ ପଙ୍ଖାଟାରେ ବିଞ୍ଚି ଦେଉଛନ୍ତି । ହଠାତ୍ ଧଇଁସଇଁ ହୋଇ, ମୁନ୍‌ଲାଇଟ କ୍ଲବର ରହିମ୍ ମିଆଁ ଝରକା ବାଟେ 'ଡାକ୍ତରବାବୁ, ବାବୁ, ଡାକ୍ତରବାବୁ' ବୋଲି ଡାକ ପକେଇଲା । ସ୍ୱାଭିମାନ ସେତେବେଳେ ମା'ଙ୍କ ବ୍ୟଜନରେ ଆରାମ ସହକାରେ ଛାଇ ନିଦର ଆଢୁଆଳରେ ଢୁଳେଇ ପଡ଼ିଥାନ୍ତି । 'କ'ଣ ହେଲା' ବୋଲି କହି ଚମକି ଉଠିଲେ ସେ ।

ରହିମ୍ ସେହିଭଳି ଧଇଁସଇଁ ହୋଇ କହିଲେ—'ସାର୍, ଅଞ୍ଚଳ ଅଧିକାରୀ ଦୁଇ ଜଣ ଲୋକ ପଠାଇ ଆମ୍ବ ତୋଳାଉ ଥିଲେ ଆପଣଙ୍କ ଜମି ଉପରେ ଥିବା ଆମ୍ବ ଗଛରୁ । ଶୀଘ୍ର ଆସନ୍ତୁ, ମୁଁ ସେମାନଙ୍କୁ ଅଟକାଇ ଆସିଚି ।'

କଥା ହେଉଛି, ଆଳି ପଶୁଡାକ୍ତରଖାନା ତିଆରି ପାଇଁ ଦୁଇଗୁଣ୍ଠ ଜମି, ରାୟ ବାବୁ ଆସିବା ପରେ ଅଞ୍ଚଳ ଓ ଆଳି ରାଜପରିବାର ସହିତ ଯୋଗସୂତ୍ର ସ୍ଥାପନ କରାଇ ପଶୁ ଚିକିତ୍ସା ବିଭାଗ ନାମରେ କରାଇଥାନ୍ତି । ସେଥିରେ ତିନି ଚାରିଟା ଆମ୍ବ ଗଛ ଥାଏ । ଏ ବର୍ଷ ଆମ୍ବ ଫସଲ ଭଲ ହୋଇଥିବାରୁ ସେଥିରେ ମଧ୍ୟ ବେଶ୍ ଫଳ ହୋଇଥାଏ । ସ୍ୱାଭିମାନ ମନେ ମନେ ସ୍ଥିର କରିଥାଆନ୍ତି, ଆମ୍ବକୁ ନିଲାମ କରି କିଛି ରାଜସ୍ୱ ଆଦାୟ କରିବେ ଓ ସରକାରୀ ତହବିଲରେ ଜମା ଦେଇ ଏକ ନୂଆ ପରମ୍ପରା ସୃଷ୍ଟି କରିବେ । ଜଗିବା ଦାୟିତ୍ୱ ପାଇଁ ମୁନ୍‌ଲାଇଟ କ୍ଲବ୍‌କୁ ସେଥିରୁ କିଛି ଦେଲେ ସେମାନେ ବର୍ଷକ ପାଇଁ ଭଲି ଓ ଫୁଟ୍‌ବଲ କେତେଟା କିଣିପାରିବେ । ମାତ୍ର ଏ ଖବର ଶୁଣି ତାଙ୍କର ସମସ୍ତ ସ୍ୱପ୍ନ ଭାଙ୍ଗିଗଲା । କ'ଣ ପାଞ୍ଚଲେ ଘଡ଼ିଏ, ତାପରେ 'ରହିମ୍ ଚାଲ ଦେଖିବା କ'ଣ ହେଉଛି' କହି ଚାଲିଗଲେ ଜାଗା ଉପରକୁ ତାଙ୍କ ମା'ଙ୍କ ବାରଣ ନ ମାନି ।

ଡାକ୍ତର ବାବୁଙ୍କୁ ଦେଖି ଆମ୍ବ ତୋଳାଳି ଦୁହେଁ ଉଠି ଦଣ୍ଡବତ ପକାଇ କହିଲେ, 'ବାବୁ, ଅଞ୍ଚଳ ଅଧିକାରୀ ପଠେଇ ଥିଲେ ଆମ୍ବ ତୋଳିବାକୁ । ରହିମ୍ ଆମକୁ ବାରଣ କରି ଆପଣଙ୍କୁ ଡାକି ଗଲାରୁ ଆମେ ବସିଛୁ । ଆମ୍ବ ତୋଳି ନାହୁଁ ।'

Digitized by srujanika@gmail.com

'ଠିକ୍ ଅଛି, ଆଉ ଟିକେ ଅପେକ୍ଷା କର, ମୁଁ ତୁମ ଅଞ୍ଚଳ ଅଧିକାରୀଙ୍କ ସହିତ କଥା ହେଇ ଆସୁଛି । ତାପରେ ଯଦି ହେବ ତୁମେ ଆମ୍ବ ତୋଳିବ' କହି ସ୍ୱାଭିମାନ ଚାଲିଲେ ଅଧିକାରୀଙ୍କ ଘରକୁ ।

ଅଞ୍ଚଳ ଅଧିକାରୀ କୌଣସି ଏକ ଜରୁରୀ ନଥି ଧରି ବ୍ୟସ୍ତ । ସ୍ୱାଭିମାନଙ୍କୁ ଦେଖି ବସିବା ପାଇଁ ଇଙ୍ଗିତରେ ଜଣାଇ ଅବେଳରେ ଆସିବାର କାରଣ ପୁଚ୍ଛା କଲେ ତାଙ୍କ ପାଇଁ ଥଣ୍ଡା ସରବତ୍‌ର ବରାଦ କରି ଦେଇ ।

ସ୍ୱାଭିମାନ ମଧ ହସି ହସି ଧନ୍ୟବାଦଟା ଦେଇ କହିଲେ, 'ଆପଣ କୌଣସି ଲୋକଙ୍କୁ ଆମର ସେ ଡାକ୍ତରଖାନା ଜମି ଉପର ଆମ୍ବଗଛରୁ ଆମ୍ବ ତୋଳିବାକୁ ପଠାଇଛନ୍ତି ?

—'ହଁ, କ'ଣ ହେଲା କି' ?

—'କିଛି ନାହିଁ ଯେ, ଆମ୍ବ ଯଦି ଦରକାର ଥିଲା ମୋତେ ଜଣାଇ ଥିଲେ ବୋଧହୁଏ ଭଲ ହୋଇଥା'ନ୍ତା' ।

ମାନଗୋବିନ୍ଦଙ୍କ ସ୍ୱାଭିମାନରେ ଆଞ୍ଚ ଆସିଲା ଏଭଳି କଥାରେ । ସେ ଏ ଅଞ୍ଚଳର ସର୍ବମୟ କର୍ତ୍ତା, ଆମ୍ବ ତୋଳିବା ପାଇଁ ପୁଣି ଏ ପଶୁଡାକ୍ତରଙ୍କୁ କହିବାର ଆବଶ୍ୟକତା ! କମ୍ ସ୍ପର୍ଦ୍ଧା ନୁହେଁ ତ ଏ ଯୁବକର ! ରାଗଟାକୁ ଚାପି ରଖି ଅଧିକାରୀଆ ଢଙ୍ଗରେ କହିଲେ, 'ଗଛ ଅଞ୍ଚଳର, ତେଣୁ ଆପଣଙ୍କୁ ଆବେଦନ କରିବାର ଆବଶ୍ୟକତା କେଉଁଠି ?'

—'କିଛି ବୁଝିପାରୁନି । ଗଛ ଅଞ୍ଚଳର, ମାନେ ?' ସ୍ୱାଭିମାନଙ୍କ ମୁହଁରେ ପ୍ରଶ୍ନ ।

—'ଏତିକି ବୁଝିପାରୁ ନାହାନ୍ତି ? ଜମିଟା ସିନା ଆପଣଙ୍କ ବିଭାଗକୁ ଦିଆଯାଇଛି ହେଲେ ସେଥିରେ ଥିବା ଗଛଗୁଡ଼ାକ ତ ଦିଆଯାଇ ନାହିଁ ।' ମାନଗୋବିନ୍ଦ ଅଧିକାରୀ ଉତ୍ତର ଦେଲେ ବେଶ୍ ଗମ୍ଭୀର ଭାବରେ । ମୁହଁରେ ତାଙ୍କର ତାସଲ୍ୟର ସରୁ ହସ ।

ଅସଲରେ ଜମିଟା ହସ୍ତାନ୍ତର ହେଲାବେଳେ ସେଥିରେ ଥିବା ସମସ୍ତ ଗଛ ଦଲିଲରେ ଉଲ୍ଲେଖ ରହିବାର କଥା । ତାହା ହୋଇ ନାହିଁ । ସ୍ୱାଭିମାନ ଘଡ଼ିଏ ଥକ୍କା ହୋଇ ବସି ପଡ଼ିଲେ ନିରୁତ୍ତର ଭାବରେ । ଅଧିକାରୀ ମାନଗୋବିନ୍ଦ ମୁରୁକି ମୁରୁକି ହସି, ତାଙ୍କୁ କଣେଇ କଣେଇ ଚାହିଁ ନିଜର ନଥି କାମରେ ବ୍ୟସ୍ତତା ପ୍ରଦର୍ଶନ କରୁଥିବା ସ୍ୱାଭିମାନ ଦେଖିପାରୁ ଥା'ନ୍ତି । ତାଙ୍କ ସ୍ପର୍ଶକାତର ମନଟା ଭାରି ଛଟପଟ ହେଉଥାଏ ମାନଗୋବିନ୍ଦ ଅଧିକାରୀଙ୍କ ଅଧିକାରକୁ ଯେପରି ଚୂନଭୂତ କରି ଦେବା ପାଇଁ । ହଠାତ୍ ତାଙ୍କ ମନ ଭିତରେ ମଧୁବାରିଷ୍ଟରଙ୍କ

Digitized by srujanika@gmail.com

ବିଲାତରେ ଶୂନ୍ୟରେ ଜମି କିଣା ଆଖ୍ୟାୟିକାଟା ମନେ ପଡ଼ିଗଲା । ମୁହଁ ତାଙ୍କର ଗମ୍ଭୀର ହୋଇ ପଡ଼ିଲା । ସ୍ୱାଭିମାନ ଉଠି ପଡ଼ିଲେ ।

—'ଆରେ ଉଠି ଯାଉଛନ୍ତି! ସରବତ୍‌ଟା ଖାଇ ଦେଇ ଯାଆନ୍ତୁନା ।' ମାନଗୋବିନ୍ଦଙ୍କ ଭାଷାରେ ସ୍ୱାଭିମାନଙ୍କର ମନେହେଲା ଏକ ତାଚ୍ଛଲ୍ୟ ଯେପରି ଭରି ରହିଛି । ଉତ୍ତର ଦେଲେ, 'ମୁଁ ଟିକେ ଦେଖି ଆସେ ଆପଣଙ୍କ ଲୋକମାନେ କେଉଁ ବାଟରେ ଗଛ ଉପରକୁ ଚଢ଼ୁଛନ୍ତି ଆମ୍ବ ତୋଳିବାକୁ । ଆପଣ ତ ଜମି ହସ୍ତାନ୍ତର କରିଛନ୍ତି ଗଛ ନୁହେଁ । ଏହା ବିଲ୍‌କୁଲ୍ ଠିକ୍ କଥା । ତେଣୁ କେଉଁ ଜମି ଉପର ଦେଇ ଆପଣଙ୍କ ଲୋକେ ଯାଇ ଆମ୍ବ ପାରିବେ ମୁଁ ସେଇଟା ଟିକେ ଦେଖି ଆସିଲେ ଥଣ୍ଡା ସରବତ୍‌ଟା ଆପଣଙ୍କ ଘରେ ଖାଇ ଥଣ୍ଡା ହେଇ ଘରକୁ ଫିରି ।'

ମୁହଁ ଉପରେ ସ୍ୱାଭିମାନଙ୍କର ଏଭଳି କଥାରେ ମାନଗୋବିନ୍ଦ ଅଧିକାରୀଙ୍କ ମୁହଁଟା ମେଲା ହୋଇଗଲା, କୌଣସି ଭାଷା ସ୍ଫୁରିଲା ନାହିଁ । ସ୍ୱାଭିମାନ ହରିଆନା ଷଣ୍ଢ ପରି କୁଦାମାରି ଚାଲିଗଲେ ଶୂନ୍‌ଗାଡ଼ି ଚଢ଼ି ।

* 'ଶତଦ୍ରୁ' ପୂଜାସଂଖ୍ୟା – ୧୯୯୪

Digitized by srujanika@gmail.com

# ଆବର୍ତ୍ତନ

ଅତିଥି ଭାବରେ, ମୂଳବସନ୍ତରେ ପହଞ୍ଚିବାକୁ, ବନାଘାଟରେ ନଦୀ ପାରି ହେଉ ହେଉ, ବିଗତଯୌବନା ବିରୂପାର ଅତୀତ ଇତିହାସ ଯେ କି ମହାନ୍, ଚିନ୍ତା କରିପାରୁ ନ ଥାନ୍ତି ଅଧ୍ୟାପକ କନ୍ହାନ୍ତ । ଦୀର୍ଘ ତିରିଶ ବର୍ଷ ତଳେ ଆଉଥରେ ସେ ଆସିଥିଲେ ଏକ ସାଂସ୍କୃତିକ ଉତ୍ସବରେ ଯୋଗଦେବାକୁ ତା'ରି କୂଳରେ ଥିବା କୁସୁପୁର ଦଶହରା ପଡ଼ିଆକୁ । ବିହ୍ୱଳ ହୋଇ ବିରୂପାର ମନ୍ଥର ସ୍ରୋତରୁ ଆଞ୍ଜୁଳାଏ ପାଣି ନେଇ ମୁଣ୍ଡରେ ଛିଞ୍ଚିଲେ କନ୍ହାନ୍ତ ଏହାର ଐତିହ୍ୟ ଓ ଅତୀତ ଗୌରବ ଗାଥାକୁ ସ୍ମରଣ କରି ।

କେତେ ଯୋଗଜନ୍ମାଙ୍କୁ ଏହାରି କୂଳରେ ଜନ୍ମଦେଇ ଏହାରି ପାଣିରେ ସେ ଧୋଇ ନିର୍ମଳ ନ କରିଛି ତାଙ୍କର ତନୁକୁ! ଆହା, ସେ ଆଜି ନିଃସ୍ୱା! ସୁନାବ୍ୟା ଏହି ନଦୀରେ ଆଉ ତ କାହିଁ ଦେଖାଯାଉ ନାହିଁ ସେ ଧାଡ଼ିବନ୍ଧା ଚାଳ ଛପରଘେରା ବିରାଟକାୟ ନୌକା! ତାରି ବୁକୁ ଉପରେ ଠିଆ ହୋଇ ହିରଣ୍ମୟଙ୍କୁ ଅର୍ଘ୍ୟଦାନ କରୁଥିବା କୁଳୀନ ବ୍ରାହ୍ମଣର ସେ ବେଦଗାନ ତ କାହିଁ ଆଉ ଶୁଣା ଯାଉନାହିଁ ? ସବୁଠି ଖାଲି ଶୁଷ୍କ, ନିରସ ବାଲିକୁଦ ଓ ସୁଳମ୍ବ ତଟ ଘେରିବନ୍ଧ । ଚଳଚଞ୍ଚଳା ବିରୂପାର ଉତ୍‌ଥଳ, ଉଚ୍ଛଳ ବୁକୁଫଟା ଆନନ୍ଦର ଉଚ୍ଛ୍ୱାସକୁ ରୋକିବାକୁ ମଣିଷର କି ତତ୍ପରତା !

ଆଚାର୍ଯ୍ୟ ପ୍ୟାରିମୋହନ, ଗଣକବି ବୈଷ୍ଣବ ପାଣି, ସାହିତ୍ୟଗୁରୁ ବାଗ୍ମୀ ବିଶ୍ୱନାଥ, ପଣ୍ଡିତ କରୁଣାକର, ସଂସ୍କାରକ ବୈରାଗୀ ମିଶ୍ର, ବାଣୀଭୂଷଣ କୃଷ୍ଣଚନ୍ଦ୍ର କର, କବି ପ୍ରାଣକୃଷ୍ଣ ସାମଲ, ପଲ୍ଲୀକବି ନନ୍ଦକିଶୋର, ଶିଳ୍ପୀଗୁରୁ ବିମ୍ବାଧର, ସାହିତ୍ୟିକ-ସାମ୍ବାଦିକ ଜ୍ଞାନୀନ୍ଦ୍ର, ରାଜେନ୍ଦ୍ର ଏହି ବିରୂପାରେ ସୁଚିମନ୍ତ ହୋଇ, ଏହାରି ଅମ୍ବୁ ପାନ କରି, ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିକୁ ଯେ କି ଦାନ ନ ଦେଇଛନ୍ତି, ଭାବିଭାବି କନ୍ହାନ୍ତ ବିହ୍ୱଳ ହୋଇ ଯାଉଥିଲେ ।

ନିଜ ସୌରଭରେ ନିଜେ ମୁଗ୍ଧ ହୋଇ ବନାନୀର ନିଭୃତ କୋଣରେ କୁସୁମ ଝଡ଼ିଲା ପରି ଏହି ମାଟିରେ ଝଡ଼ି ପଡ଼ିଲେ ଶିଳ୍ପୀ ଅବନୀ ମହାନ୍ତି । ବଲାଙ୍ଗୀର ରାଜ ଦରବାରରେ ଶ୍ରେଷ୍ଠ ଟେକ୍ସିଡର୍‌ମିଷ୍ଟ ତଥା ଶିଳ୍ପୀ ଭାବରେ ସମ୍ମାନ ପାଉଥିବା ଏହି ଅମ୍ଳାନ ଶିଳ୍ପୀଙ୍କୁ ସ୍ୱାଧୀନ ଭାରତର ଜାତୀୟ ସରକାର

Digitized by srujanika@gmail.com

ସରକାରୀ ଜୋତା କାରଖାନାରେ ମ୍ୟାନେଜର ପଦରେ ଅଭିଷିକ୍ତ କରାଇ ତାଙ୍କର ଗୁଜୁରାଣ ମେଣ୍ଟାଇବାର ବ୍ୟବସ୍ଥା କରିଥିଲେ । ତିଳେହେଲେ ପ୍ରତିବାଦ କରିନାହାନ୍ତି ଏଇ ମକଦ୍ଦମ ଘରପୁଅ । ନୀରବ ସାଧକ ପରି ହଜିଗଲେ ସେ ଏ ଦୁନିଆରୁ, ଯେପରି ହଜି ଯାଇଛନ୍ତି ଏ ଜାତିର ଅନେକ ଋଷି ନିଘଞ୍ଚ ଅରଣ୍ୟ ମଧ୍ୟରେ, ହିମାଳୟର ଗହନ ଗୁହାରେ । ଧନ୍ୟ ଧନ୍ୟ ଏ ଜାତି । ପଟାନ୍ତର ନାହିଁ ଏଭଳି ନିଦର୍ଶନର !!

କେତେ ଜୀବନର ସଂସ୍କାର ହୋଇଛି ଏହାରି ପାଣିରେ ! କେତେ ସଂସ୍କାର ଆଣିଛି ସମାଜ ଭିତରେ ଏହାରି ସଲିଳ ଧୌତ ମହାମନୀଷୀମାନଙ୍କ ଦ୍ୱାରା । ଏହାରି ତଟ୍ରେ ଅନତି ଦୂରରେ ଠିଆ ହୋଇ ରହିଛନ୍ତି ରତ୍ନଗିରି ଓ ଲଳିତଗିରି ମୂକ ସାକ୍ଷୀ ରୂପରେ, ଏହି ନଦୀର ଅତୀତ ଗୌରବଗାଥାକୁ ମଥାରେ ବହନକରି କାହିଁ କେଉଁ ବୌଦ୍ଧିକ ଯୁଗରୁ !

* * * * * *

କ୍ଷୀଣଧାରା ବିରୂପାର ଜଳରେ ଏବେବି ସେ ପୁଷ୍ଟି ପରିପୂର୍ଣ୍ଣ । ସେଇ ନୀରସେବିତ ଯୁବପ୍ରାଣରେ ସେ ଉତ୍ତେଜନା ଏବେ ବି ଉଜ୍ଜୀବିତ ।

ଘଟଣାଟି ୧୯୪୯ କି ୫୦ ମସିହାର ହେବ ପ୍ରାୟ ! ସଦ୍ୟ ସ୍ୱାଧୀନ ଭାରତର ଯୁବମନରେ କେତେ ଉନ୍ମାଦନା ! ସବୁ ଯେପରି ପରିବର୍ତ୍ତନ କରି ଦେବେ । ରହିବ ନାହିଁ ଏ କୁସଂସ୍କାର, ଉଚ୍ଚନୀଚର ଭେଦଭାବ—ସାମନ୍ତବାଦୀ ବଡ଼ିମାର ଚିହ୍ନବର୍ଣ୍ଣ ।

* * * * * *

ବୃଦ୍ଧ ପଣ୍ଡିତ ନିର୍ବିକାର କରଶର୍ମା, ପ୍ରାତଃ ଶୌଚ କାର୍ଯ୍ୟ ସମାପନ ଉଦ୍ଦେଶ୍ୟରେ, ଉଚ୍ଚ କଠଉ ମାଡ଼ି, ନିଜ ବାଉଁଶ ବୁଦାର ସଦ୍ୟ ଚଞ୍ଚା ଏକ ବଙ୍କୁଲି ବାଡ଼ି ଧରି ଅଧ ଇଞ୍ଚ ମୋଟା କାଚର ପ୍ରଚକ୍ଷୁ ଆଖିରେ ଲଗାଇ, ତା'ର ଦୁଇ ନାଣିରୁ ବାହାରିଥିବା କଳା ଧଳା ରଙ୍ଗର ସୂତାରେ କାନକୁ ଭଲରକମ ବାନ୍ଧି, ତଳକୁ ଉପରକୁ ଚାହିଁ, ଖଟମ୍ ଖଟମ୍ କରି ନାରାୟଣନାମ ଉଚ୍ଚାରଣପୂର୍ବକ, ପାଦ ସଞ୍ଚାଳନ କଲେ, ବିରୂପା କୂଳ ଦାସସାହି ତୋଟା ଆଡ଼କୁ । ଦୁର୍ଭାଗ୍ୟ ତାଙ୍କର । ସକାଳୁ ସକାଳୁ କାଳିଆ ଭୁଆଟା କୁଆଡୁ ଥିଲା ଗୋଡ଼େଇ ଆଣିଲା ତାଙ୍କ ଶଙ୍ଖ ବିରାଡ଼ିକୁ । ଖିର୍‌ଖିର୍ ଶବ୍ଦ କରୁ କରୁ ପଣ୍ଡିତ ନିର୍ବିକାରଙ୍କୁ ଛନ୍ଦି ହୋଇ ପଳେଇଲେ ଲୋକାଦାଣ ବାଡ଼ି ସିଜୁବୁଦା ଆଡ଼େ ।

Digitized by srujanika@gmail.com

ନିର୍ବିକାରଙ୍କ ମୁଖମଣ୍ଡଳ ବିକାରରେ ଗାରଗାର ହୋଇ ପଡ଼ିଲା । ନାରାୟଣ ରକ୍ଷାକର କହି ପାଦେ ପଛେଇ, ପୁଣି ଆଗକୁ ପାଦେ ପାଦ ବଢ଼େଇ ଟିକିଏ ଉପରଆଡ଼କୁ ଅନେଇଲା ବେଳକୁ ନଜର ପଡ଼ିଲା ସାମ୍ନା ଦୀନବନ୍ଧୁ କରଙ୍କ ଘର ଆଗ, ଛକ ଉପରେ ଲୋକାଦାଣ କୋଠିଘର କାନ୍ଥ ଉପରେ ବଡ଼ ବଡ଼ ଅକ୍ଷରରେ, ଅଙ୍ଗାର କଳାରେ ଲେଖା ହୋଇଛି :

"ସାବଧାନ ! ନିହଳୁଆ ବାନାଧାରୀ ରକ୍ଷଣଶୀଳ ବ୍ୟକ୍ତିଙ୍କ ଶୋଷଣ ଚକ୍ରରେ ପଡ଼ନ୍ତୁ ନାହିଁ, ଗୋବର ପାଣି ପିଅନ୍ତୁ ନାହିଁ ।"

"ଶଳେ ବୁଡ଼େଇ ଦେଲେ ଏ ଜାତିକୁ । ଏଇଟା ସେ ଶୈଳର କାମ । ନାଁରୁ ଶଳା ମାଇ କି ଅଣ୍ଡିରା ଜାଣିବା ମୁସ୍କିଲ, ହେଲେ ଏସବୁ କାମରେ ବେଶ୍ ଷଣ୍ଢ । ଶଳେ ସ୍ୱାଧୀନ ହୋଇଛନ୍ତି । କାହାକୁ ଖାତିରି ଅଛି ? ହ୍ୟାପ, ସୀତାନାଥବାବୁ ଜମିଦାର ଥିଲାବେଳେ ଯାହାକୁ ଶାଢ଼ିଲି ଗାଇ ବାଟ ଛାଡ଼ି ଚାଲି ଯାଉଥିଲା, ସେ ପୁଣି ଏ ଶାସନ ଭିତରେ ପାଲିଙ୍କିରୁ ଓହ୍ଲେଇ, ଜୋତା କାଢ଼ି ଓଳଗି ହେଇ ହେଇ ଗାଁ ଏ ମୁଣ୍ଡରୁ ସେ ମୁଣ୍ଡକୁ ଚାଲି ଚାଲି ଯାଉଥିଲା, ଖାଲି ପାଦରେ, ଆଉ ଏବେ, ଏ ହ୍ୟାପ ବାଳୁଙ୍ଗା ଟୋକାଏ ନାଲି ନେଳି ଲୁଙ୍ଗି ମାରି ଗାଁ ଦାଣ୍ଡରେ ଟହଲ ମାରୁଛନ୍ତି । କ'ଣ ନା ଆମେ ସ୍ୱାଧୀନ ହେଇଗଲୁ । ମୁରବିଶୂନ୍ୟ ହେଇଗଲା ଏ ଗାଁଟା । ଆରେ କ'ଣ ମନେକଲେ କି ଏମାନେ ? ଭଲେ ଭୋଳାନାଥ ମରିଗଲାଣି, ନ ହେଲେ—ହୁଁ—ସିଂହ ଗୁହାରେ ମିରିଗ ନାଟ ହେଉଥାଆନ୍ତା ?"

ଅଦିନିଆ ମେଘଗର୍ଜନ ପରି ଗର୍ଜନଟା ଶୁଣି ବଗୁଲି କରର ନିଦଟା ଭାଙ୍ଗିଗଲା । 'ସକାଳଟାରୁ ଆରମ୍ଭ ହେଇଗଲା ଆଜି ନାମ ସଂକୀର୍ତ୍ତନ' । —କଞ୍ଚା ନିଦରେ, ଦୁଇ ଚାରିଟା ହାଇମାରି, ଟିକେ ଭିଡ଼ି ମୋଡ଼ି ହୋଇ, ସେଇ ଝରକା ବାଟେ ପଚାରିଲା—"କ'ଣ କି ଦଦେଇ, ସକାଳୁ ସକାଳୁ ଭୋଳିକେଇଙ୍କ ନାଁ କାହିଁକି ଉଚ୍ଚାରଣ କଲେଣି ?"

"ମତେ ଭୂତ ଲାଗିଛି । କିଛି ଜାଣିନି ଯେମିତି ! ତୁଚ୍ଛାଟାରେ ଯେପରି ଭୋଳି କଥା ମନେ ପଡ଼ିଗଲା । ଭୋଳି ପରି ବୀରପୁରୁଷ ଏ ଗାଁରେ ଆଉ ନ ଥିବାରୁ ସିନା ତୁମମାନଙ୍କର ଏସବୁ ନାଟ ।" ଖୁଙ୍କାରି ହୈଲାଭଳି ନିର୍ବିକାର ପଣ୍ଡିତେ ଉତ୍ତର ଦେଲେ ।

"ସ୍ୱାଧୀନତା ସଂଗ୍ରାମରେ ଇଂରାଜ ସିପେଇଙ୍କ ଗୁଳି ମାଡ଼ରେ ଭୋଳିକେଇ ଶହୀଦ ହେଇ ଯାଇଥିଲେ ନା କ'ଣ ?" ବଗୁଲିବାବୁ ପଚାରିଲେ ।

Digitized by srujanika@gmail.com

''ଆରେ ଯା'ମ, ଲଢ଼େଇରେ ଶହୀଦ ? ଲଢ଼େଇ କରିବ—ଗୁଳି ବାରୁଦ ଗୋଟେ କୁଆଡୁ ଆସି ବାଜିଯିବ, କ'ଣ ନା ଶହୀଦ ହେଇଗଲା! ଆରେ ଏଡ଼େ ବଡ଼ ବୀର ବାଳି, ଏଇମିତି ଅଜଣା ଶରରେ ମଲା । କ'ଣ ସେ ଶହୀଦ ହେଇଯାଇଥିଲା ? ଏହା ଗୋଟାଏ ଗୋଟାଏ ବାହାଦୁରିଆ ଶବ୍ଦ ତୁମେ ସବୁ ବାହାର କରିଛ, ଖାଲି ରାଜା ଅନୁଗ୍ରହ ପାଇଁ । ବାହୁରେ ତ ବଳ ନାହିଁ, ଖାଲି ଖୁଚୁରୁ ଖୁଚୁରୁ କାମ ଜାଣିଛ'' । ନିର୍ବିକାର ପଣ୍ଡିତେ ଚିତ୍କାର କରି କହୁଥିଲେ ।

ଖଣ୍ଡେ ପାଚିଲା ଗାମୁଛା କାନ୍ଧରେ ପକାଇ ବଗୁଲିବାବୁ ବାହାରି ଆସିଲେଣି ତାଙ୍କ ଉଚ୍ଚପିଣ୍ଡା ଉପରକୁ । ଗାଁର ଆଉ କେତେଟା ଟୋକା ବି ଏ ଭିତରେ ଜମି ଗଲେଣି ଆସି । ଶୈଳବାବୁ ବି ଆସି ପହଞ୍ଚିଗଲେଣି । ରଙ୍ଗିଆ ପଟାପଟା ଲୁଙ୍ଗି ତଳେଆଡୁ ଆଣ୍ଠୁଯାଏ ଓଲଟାଇ ଦେଇ ଅଣ୍ଟାରେ ଗଣ୍ଠିପକା ହୋଇଛି । କାନ୍ଧରେ ଖଣ୍ଡେ ହାତପୋଛା ଛୋଟିଆ ଟର୍କିସ୍ ତଉଲିଆ । ହାତରେ ଦାନ୍ତଘଷା ବୁରୁଶ ।

ଶୈଳବାବୁଙ୍କୁ ଦେଖି ପଣ୍ଡିତ ନିର୍ବିକାରଙ୍କ କ୍ରୋଧ ଦୁଇଗୁଣ ବଢ଼ିଗଲା । ସେଥିରେ ପୁଣି ଶୈଳବାବୁଙ୍କର ଯେଉଁ ଗଳାଖଙ୍କାର ! ଆଉ ସେଦିନ ନଈକୂଳରେ ସେ ଯେଉଁ ଉଚ୍ଚଗଳାରେ ଗାଉଥିଲେ ମନମୋହନ ମିଶ୍ରଙ୍କର 'ଏକ ହୁଅ, ଏକ ହୁଅରେ ଭାରତ ଜନତା ସଂଗ୍ରାମର ମଇଦାନ୍‌ରେ, ଏକହୁଅ', ଏସବୁ ମନେପଡ଼ିଲା ବେଳକୁ ପଣ୍ଡିତ ଶିରୋମଣିଙ୍କ ମୁଣ୍ଡକୁ ଯେଁପରି ସବୁଯାକ ରକ୍ତ ଚଢ଼ି ଯାଉଛି । ଏ ସବୁତ ତା'ରି କାମ । ହ୍ୟାପ ଅକାଳ କୁଷ୍ମାଣ୍ଡ, କୁଳ ବୁଡ଼ିଲାବେଳକୁ ଘୋଡ଼ାମୁହାଁଟାଏ ଜନ୍ମ ହେଇଛି । ଗାରୁଗାରୁ ହେଉଥାନ୍ତି ପଣ୍ଡିତେ ।

''ହେଁ-ହେଁ-ହେଁ-ବିକାର ଜେଜେ । କ'ଣ ଭୋଳିକରେ କରିଥିଲେ ? ଆହାହା, ବିଚାରା ଭୋଳିକରେ ସ୍ୱାଧୀନତା ସଂଗ୍ରାମବେଳେ ସିନା ପୁଲିସକୁ ଡରି କୋଠି ଭିତରେ ଲୁଚିଥିଲେ, ନହେଲେ ତାଙ୍କପରି ବୀରପୁରୁଷ ଏ ଖଣ୍ଡମଣ୍ଡଳରେ ନ ଥିଲେ'' ଶୈଳବାବୁ ତାଙ୍କ ନିଜସ୍ୱ ଢଙ୍ଗରେ କହିପକାଇଲେ ବୃଦ୍ଧ ନିର୍ବିକାରଙ୍କୁ ଚିଡ଼ାଇବା ଉଦ୍ଦେଶ୍ୟରେ ।

''କ'ଣ କହିଲୁ ତା'ପରି ବୀରପୁରୁଷ ଅଛନ୍ତି ? ହଇରେ ତୁ ଦେଖିଛୁ ମହନ୍ତ ରଘୁନାଥପୁରୀଙ୍କ ପ୍ରକୋପ ? କି ଇଂରାଜ ସରକାରର ଗୁଲାମ ପୁଲିସି କିରେ ? ମହନ୍ତଙ୍କ ଗୁମାସ୍ତା ବାହାଦୁର ରଶିକ କାନଗୋଇଙ୍କ ବିହାରୀ ପିଆଦାକୁ ଦେଖିଛୁ ? ଦେଖିଲେ ତୁ ଭେଟଣା ହେଇ ଯା'ନ୍ତୁରେ । ଅଦିନିଆ ରୋଗ ହଇଜାରେ ସିନା ସେ ଚାଲିଗଲା, ହେଲେ ଏବାଟେ ଯେତେବେଳେ ସେ ଯାଉଥିଲା ନା,

Digitized by srujanika@gmail.com

ଦାଣ୍ଡ ଦୁଲୁକି ଉଠୁଥିଲା । ତା' ବାଘୁଆ ନିଶ ଦେଖି ପିଲେ ଘରେ କବାଟ କିଳି ପଶୁଥିଲେ ।''

ଶୈଳ ବାବୁ 'ହେହେ-ହେହେ' କରି ହସି, ମଝିରେ ମଝିରେ 'ବାଃ ଏ ପୌରୁଷର ତ ପଟ୍ଟାନ୍ତର ନାହିଁ' ବୋଲି ମନ୍ତବ୍ୟ ଦେଇ ପଣ୍ଡିତଙ୍କୁ ଉତ୍ସୁକେଇ ଦେଉଥା'ନ୍ତି ।

'ଶୁଣୁ! ଏତେ ଆଉ ବାହାଦୁରିଆ ମନ୍ତବ୍ୟ ଦେ'ନା । ଭୋଳି କରକୁ ଦେଖିଛୁ ?' ପଣ୍ଡିତେ ପଚାରିଲେ ।

''ନା'ମ, ଦେଖିଲି କେବେ ? ଶୁଣିଛି, ମୋ ଏକୋଇଶିଆକୁ କୁଆଡ଼େ ତାଙ୍କର ଦଶାହ ପଡ଼ିଥିଲା ଯେ ମୋ ଏକୋଇଶିଆ ପାଳା ହେଇପାରି ନ ଥିଲା''—ଶୈଳବାବୁ କହିଲେ । ''ହଁ ହଁ ସେଇ ଭୋଳି କର । ରଶିକ କାନଗୋଇ ବିହାରୀ ପିଆଦାକୁ ଧରି ଖଜଣା ଅସୁଲିକୁ ଆସିଥିଲା । ଭୋଳି କର ଦୋ'ଡ଼ା ଖାଉଛି । ଗୁମାସ୍ତାଏ ଭୋଳି କର ବାରଣ୍ଡାରେ ଚୌକାଟାଏ ପକାଇ ବସି ବିହାରୀ ପିଆଦାକୁ କହିଲେ 'ଡାକ ପକାବେ ପଣ୍ଡିତକୁ, ଦଶଥର ଧପେଇଲାଣି ଖଜଣା ପାଇଁ ।'

ବିହାରୀ ପିଆଦା, ଗ୍ରହଣ ଖଣ୍ଡିଆ ଯୋଗୁ ମୂର୍ଦ୍ଧାନୁନାଶିକ ସ୍ୱରରେ ଡାକ ପକାଇଲା ବେଳେ, ଖଜଣାଟା ଖେଁଚେଁଣା ପରି ଶୁଭୁଥାଏ ।

'ଶଳା, ଗଲା ଆଜି ଭୋଜନଟା' ହ୍ୟାଳିପ ଶୁଦ୍ରଟା ଖାଇଲାବେଳକୁ ପାଟିକଲାଣି । ମନକୁ ମନ ଗାରୁଗାରୁ ହୋଇ ଭୋଳି ପଣ୍ଡିତେ ଉଠିପଡ଼ିଲେ । ମନେ ମନେ ପାଞ୍ଚିଲେ 'ଦଉଛି ଆଜି ଶଳାକୁ ପାନେ' । ଉଣ୍ଡି ଦେଖିଲେ, ଦାଣ୍ଡ ପଟର ଝରକାର ଠିକ୍ ସାମନାକୁ ପିଣ୍ଡାଦାଢ଼କୁ ଝାଡ଼ାଫେରି ବସିଲାପରି ପିଚାଟେକି ବସିଛି ପିଆଦା ବିହାରୀ ।

''ଆରେ ଶୁଣୁଛୁତରେ ଓଥରା''? ଶୈଳବାବୁଙ୍କୁ ଲକ୍ଷ୍ୟ କରି କହିଲେ ନିର୍ବିକାର ପଣ୍ଡିତେ ।

''ଭୋଳି କରର ମୁଣ୍ଡକୁ ତ ରକ୍ତ ଚଢ଼ି ଯାଇଥିଲା—ଅଧାଖିଆରୁ ଉଠିଛି ବୁଢ଼ା—ଆଣିଲା ଏକ ଆଙ୍କୁଡ଼ି—ଝରକା ବାଟେ ଭିତରପଟୁ ଦେଲା ଖେଞ୍ଚି ଯେ, ବିହାରୀ ପିଆଦା ମର ନମର । ରଶିକ ଗୁମାସ୍ତାର ଗର୍ଜନରେ ଗାଁ ସାହି କମ୍ପିଲା । ଭୋଳିର ମଧ କମ୍ ରାଗ ନୁହେଁ । କହିଲା, 'ଏଠି ଆଉ ପାଟିତୁଣ୍ଡ କରନା । ଯା ମହନ୍ତ ପାଖରେ ନାଲିଶ୍ କରିବୁ ମୋ ନାଁରେ'' ।

Digitized by srujanika@gmail.com

ରଶିକ କାନଗୋଇ ତମତମ ହୋଇ କାନ୍ଧର ଗାମୁଛାକୁ ଦୁଇଥର ଝାଡ଼ିଦେଇ ପୁଣି କାନ୍ଧରେ ପକାଇ ଯାଉ ଯାଉ କହିଗଲା 'ଥୟ ଧର ପଣ୍ଡିତେ—ରାତି ପାହିଲେ ହେଲା' ।

'ଆରେ ଯାଯା'—କହି ତମତମ ହୋଇ ବାରଣ୍ଡା ଖଟୁଲି ଉପରେ ନିଜର ପୃଥୁଳ ଶରୀରଟାକୁ ଲଥିକରି କଚିଦେଇ ବସି ପଡ଼ିଲେ ଭୋଳି ପଣ୍ଡିତେ । ପାନ ଡାଲାରୁ ପାନ ଭାଙ୍ଗି ଖଲରେ କୁଟି ଥରକୁ ଥର ପାଟିରେ ପକାଉଥାନ୍ତି କୋରିକୋରି, ଆଉ ରଶିକ କାନଗୋଇଙ୍କ ଚୌଦ୍ଦପୁରୁଷ ଉଦ୍ଧାର କରୁଥା'ନ୍ତି ।

''ଶୁଣୁଛୁନାରେ ବଗୁଲି—ଶୁଣୁ ଶୁଣୁ''

''ଦଦ୍‌ଦେଇ, ଆପଣେ ପରା କ'ଣ ମଇଦାନ ଯିବେ ?'' ଗଇ ମଲ୍ଲିକ ସକାଳୁ ପହଞ୍ଚିଯାଇଛି ହଳ ନେବାକୁ, ଖେଳୁଆ ପାଇଁ ଦୋହଡ଼ ଚାଷ କରିବାକୁ—କହି ପକାଇଲା ଗୋଳ ଭାଙ୍ଗିବାକୁ ।

''ହ୍ୟାପ, ଆଉ ମଇଦାନ ନା ଘଣ୍ଟା ? କି ବେଳାରେ ଉଠିଥିଲି କେଜାଣି, ସକାଳୁ ସକାଳୁ ଶଳା ବିଲେଇଟା ଛନ୍ଦିହେଲା । ଶଳା ମାଇପିଟା ମତେ ଆଉ ରଖେଇ ଦେବ ନାହିଁ । ଗୋଟେ ବିଲେଇ ପୋଷିଛି'' । ତାନ ଛିଣ୍ଡିଲା ଘରଣୀଙ୍କ ଉପରେ ।

''ହଉ ଦଦେଇ, ଭୋଳି କକେଇଙ୍କ ପୌରୁଷ କଥା କୁହମ, ଜେଠେଇ ଆସିବା ଦିନୁ ତ ବିଲେଇ ଘରେ ଅଛି, ଆଜି ପୁଣି ତାକୁ କାହିଁକି ଦାଣ୍ଡଟାରେ ଗାଳି ଫଜିତ୍ କରୁଛ ?'' ବଗୁଲିବାବୁ ଟିକେ ବିରକ୍ତିମିଶା ଗଳାରେ କହିଲେ ।

ବୃଦ୍ଧ ନିର୍ବିକାର ପଣ୍ଡିତ କିପରି ଟିକେ ଥକାମାରି ରହିଗଲେ ।

ଶୈଳବାବୁ ଗୋଟାଏ ହସ ହସିଦେଇ କହିଲେ—''କ'ଣ ଶୁଣିବୁ କିରେ ବଗୁଲି ? ନାରଣ ବାହାଘରକୁ ମହାଦେଇପୁର ଭୋଜିରେ କୁନା ଯେ ବାଜାବାଲା ଆଉ ଯେତେସବୁ ଶୁଦ୍ର ବରଯାତ୍ରୀଙ୍କୁ ଧରି ବସିଗଲା ପଙ୍ଗତରେ, ଆଉ ଏ ବିକାର ଜେଜେ ଯେଉଁ ଭୁରୁଡ଼ି ମାରିଥିଲେ ସେତେବେଳେ, ଶେଷକୁ କ'ଣ ହେଲା ? ପୁଣି ଗୁଣ୍ଡୁପୁର ଧଡ଼ି ସାହୁ ମା'ର ଏଗାର ଦିନ ଶାସନ ମର୍ଯ୍ୟାଦା ପାଇଁ ବଳ କଷାକଷି ଚାଲିଥିଲା ବେଳେ ଚୂନକଳା ମୁହଁରେ ବୋଳି, କଛା ଖୋସୁ ଖୋସୁ ତାକୁ ଚୋଳି ଧରିବାକୁ ଅପେକ୍ଷା ନ କରି ପଳେଇ ଆସିଥିଲେ, ସେତେବେଳେ ତୋ ଦଦେଇଙ୍କର ବୀରପଣ କୁଆଡ଼େ ଯାଇଥିଲା କିରେ ବଗୁଲି ? ଓହୋ, ଭାଇ ଭୋଳାନାଥ କରଶର୍ମା ପରା ସେତେବେଳେ ନ ଥିଲେ ??''

Digitized by srujanika@gmail.com

ଶୈଳବାବୁଙ୍କ ଗଳାରୁ ଯେପରି ଏକ ବିଦ୍ରୋହ ଓ ପରିହାସ ମିଶା ଭାଷା ପୁରୁଣା କୁସଂସ୍କାର ବିରୁଦ୍ଧରେ ଉଜାଣି ଉଠିଆସିଛି ।

ପଣ୍ଡିତ ନିର୍ଝିକାରଙ୍କର, ଏତେବେଳଯାଏ ନିଷ୍କ୍ରିୟ ହୋଇ ରହିଥିବା ବୃହଦାନ୍ତ ଭିତରେ ହଠାତ୍ ପ୍ରବଳ ଆଲୋଡନ ଆରମ୍ଭ ହୋଇଗଲା ।

"ଶଳା ମାରୁଥା ବାହାଦୁରି । ଆଉ କ'ଣ କରିବ କି ? ବାପ ଅଜା ସାତପୁରୁଷଙ୍କ ମୁହଁରେ ଚୂନକାଳି ଦେବ ନାହିଁ ତ ଆଉ କାହା ମୁହଁରେ ଦେବ ? କୁଳ ନାଶ ବେଳେ ଘୋଡ଼ାମୁହାଁ ପୁଅର ଜନ୍ମ" । ରାଗ ଗରଗରରେ ଭଡ଼ରଭଡ଼ର ହୋଇ ଚାଲିଲେ ତୋଟା ଆଡ଼େ ପ୍ରକୃତିର ଡାକରାକୁ ମୁକାବିଲା କରିବାଲାଗି ।

ଦୀନବନ୍ଧୁ କରଙ୍କ ଚଉପାଢ଼ିରୁ ଏକ ମୃଦୁ ଅଥଚ ତାଚ୍ଛଲ୍ୟଭରା ହସ ସହିତ ବାହାରି ଆସିଲା ଜଗନ୍ନାଥ ଓରଫ ଜଗୁବାବୁଙ୍କ ମୁହଁରୁ "ହ୍ୟାଳିପ ପାଲା ଲାଗିଛି । ସେଇ ପୁରୁଣାକାଳିଆ କଥାକୁ ଧରି ଚାଲିଥାଉ ଏଠି ଦୁଇଓଳି ସଂକୀର୍ତ୍ତନ" ।

* * * * * *

ଜଗୁବାବୁ ଜଣେ ଅତ୍ୟନ୍ତ ଅମାୟିକ ବ୍ୟକ୍ତି ଓ ସର୍ବଗୁଣ ପରିପୂର୍ଣ୍ଣ । ଘୋଡ଼ା ଚଢ଼ା ଠାରୁ ଆରମ୍ଭକରି ଜୋତା ସିଲାଇ ପର୍ଯ୍ୟନ୍ତ ସର୍ବ କାର୍ଯ୍ୟରେ ସେ ଜଣେ କୁଶଳୀ ବ୍ୟକ୍ତି । ଛାତ୍ରାବସ୍ଥାରେ ସେ ଜଣେ ନାମକରା ଫୁଟବଲ ଖେଳାଳି ଥିଲେ । ସେ ଅଞ୍ଚଳରେ ଯେତେ ଡ୍ରାମା ହୁଏ, ମାହାଙ୍ଗା, ସାଲେପୁର, ଦର୍ପଣୀ ଲଗାଏତ ଚବିଶକୋଶ ଏରିଆରେ ସେ ସବୁର ନିର୍ଦ୍ଦେଶକ ହେଉଛନ୍ତି ଜଗୁବାବୁ । ଜୀବନରେ ବହୁ ନାଟକର ଅଭିନେତା । କର୍ଣ୍ଣାର୍ଜ୍ଜୁନ ନାଟକରେ କର୍ଣ୍ଣଙ୍କ ଭୂମିକାରେ ତାଙ୍କର ଅଭିନୟର ପ୍ରଶଂସା ଏବେ ମଧ ସେ ଅଞ୍ଚଳର ବୟସ୍କ ଲୋକମାନଙ୍କ ମୁଖରୁ ଶୁଣିବାକୁ ମିଳେ । ପ୍ରଖ୍ୟାତ ମଞ୍ଚଶିଳ୍ପୀ ବଲାଇବାବୁଙ୍କର ସେ ପୁଣି କୁଆଡ଼େ ଅତି ଅନ୍ତରଙ୍ଗ ବନ୍ଧୁ । ପରିଣତ ବୟସରେ ନିଜ ଗ୍ରାମକୁ ନିଜର କର୍ମଭୂମି କରିଛନ୍ତି ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଯତ୍କିଞ୍ଚିତ ସହଯୋଗର ପୃଷ୍ଠଭୂମି ଉପରେ । ସେ ଏ ଅଞ୍ଚଳର ଜଣେ ଜଣାଶୁଣା ସମାଜସେବୀ ମୁରବୀ ଲୋକ । ପିତୃଅର୍ଜ୍ଜିତ ବାଟିବାଟି ସଂଖ୍ୟାର ଭୂସମ୍ପତ୍ତି ନିଜ ଖାତିର ପାଇଁ ଉଡ଼େଇ ଦେଇଛନ୍ତି ଜଗୁବାବୁ । ନିଜ ଜମି ଉପରେ ଗାଁର ପିଲାମାନଙ୍କ ପାଇଁ ଉଚ୍ଚ ପ୍ରାଥମିକ ଠାରୁ ଆରମ୍ଭକରି ଉଚ୍ଚ ଇଂରାଜୀ ବିଦ୍ୟାଳୟ ପର୍ଯ୍ୟନ୍ତ ନିଜ ଉଦ୍ୟମରେ ଠିଆ କରାଇଛନ୍ତି । ଏସବୁ କାମରେ ଆଖପାଖ ସମସ୍ତ ଗ୍ରାମର ଆବାଳ ବୃଦ୍ଧଙ୍କର ଅକୁଣ୍ଠ ସହଯୋଗ ତାଙ୍କ ଉଦ୍ଦୀପନାକୁ ବହୁଗୁଣିତ କରିଥାଏ ।

Digitized by srujanika@gmail.com

ଏହିସବୁ କାରଣରୁ ଜଗନ୍ନାଥବାବୁଙ୍କର ନାମ ସେ ଖଣ୍ଡମଣ୍ଡଳରେ ଅତି ପରିଚିତ। ଯେ ଯୁଆଡ଼ୁ ଆସନ୍ତୁ, ଥାନା ଦାରୋଗାଠାରୁ ଆରମ୍ଭକରି ଜିଲ୍ଲା ମାଜିଷ୍ଟ୍ରେଟ୍ ପର୍ଯ୍ୟନ୍ତ ଯିଏ ବା ହୁଅନ୍ତୁ, ତାଙ୍କ ଡେରା ଜଗୁବାବୁଙ୍କ ଦାଣ୍ଡଘରେ ପଡ଼େ, ଆଉ ତାଙ୍କ ଚଉପାଢ଼ି ସେତେବେଳେ ବେଶ୍ ସରଗରମ ହୋଇଉଠେ। ସେ ଜଗୁବାବୁଙ୍କ ଅତିଥି।

ଜଗୁବାବୁଙ୍କ ମତରେ ଏଥିରେ ଗାଁର ଗୌରବ ବଢ଼େ। ଅତିଥି ସତ୍କାର ସହିତ ସେଦିନ ରାତିରେ ସଙ୍ଗୀତର ଆସର ଜମେ। ନିଜେ ଜଗନ୍ନାଥବାବୁ ହାରମୋନିୟମ ବା ବେହେଲାରେ ସ୍ୱର ଧରନ୍ତି।

* * * * * *

ଅଧ୍ୟାପକ କଳ୍ପାନ୍ତ ଗଲା ରାତିରୁ ଜଗନ୍ନାଥବାବୁଙ୍କ ଅତିଥି। ଗଣେଶପୂଜା ଉପଲକ୍ଷେ ସକାଳୁ ସକାଳୁ ଅତିଥିସତ୍କାର ପାଇଁ ଚାହା ପର୍ବ ବେଳେ, ଶୈଳବାବୁଙ୍କର ଜେଜେ ନିର୍ବିକାରଙ୍କ ଉପରକୁ ଛାଡୁଥିବା ବାକ୍ୟବାଣ କଳ୍ପାନ୍ତଙ୍କର ବେଶ୍ କୌତୁହଳ ଜାଗ୍ରତ କରାଇଥିଲା। ତାଙ୍କର ମନେହେଲା ଏ ଗାଁର ଯୁବକମାନଙ୍କର ରକ୍ତରେ ବାଗ୍ମୀ ବିଶ୍ୱନାଥ ଓ ସଂସ୍କାରକ ବୈରାଗୀ ମିଶ୍ରଙ୍କର ସଂସ୍କାରଧର୍ମୀ ଉଦ୍ଦୀପନା ବେଶ୍ ଉଜ୍ଜୀବିତ। ମହାଦେଇପୁର ବିବାହଭୋଜି ଓ ଧଡ଼ିସାହୁ ମା'ଙ୍କର ଏକାଦଶାହ ଭୋଜିରେ ଏଭଳି କୌଣସି ଘଟଣା ଘଟିଥିବା ସେ ଅନୁମାନ କରିନେଲେ ଶୈଳବାବୁଙ୍କ ବାକ୍ୟବାଣରୁ। ପୁଣି ତାଙ୍କ ସାମନାକାନ୍ଥରେ ଲେଖା ହୋଇଥିବା ବାଣୀ, ଯାହାକି ପଣ୍ଡିତ ନିର୍ବିକାରଙ୍କ ମନରେ ପବିତ୍ର ବ୍ରାହ୍ମ ମୁହୂର୍ତ୍ତରେ ବିକାର ଭାବ ଜାଗ୍ରତ କରିଥିଲା, ତାଙ୍କର ଏ ଧାରଣାକୁ ବେଶ୍ ଦୃଢ଼ କରିଥିଲା। ଘଟଣା ସକଳ ବିଷୟରେ ଜାଣିବା ପାଇଁ କଳ୍ପାନ୍ତଙ୍କ ମନଭିତରେ ପ୍ରବଳ ଆଗ୍ରହ। ଚା' କପ୍‌ଟିକୁ ଓଠରେ ଲଗାଉ ଲଗାଉ, ଜଗନ୍ନାଥବାବୁଙ୍କୁ ସେ ଜିଜ୍ଞାସା କଲେ—

"ଜଗନ୍ନାଥ ବାବୁ! ସକାଳୁ ସକାଳୁ ଆପଣଙ୍କ ଦାଣ୍ଡରେ ଏ ଅଜାନାତି ରହସ୍ୟ ବେଶ୍ ଆମୋଦପ୍ରଦ ହେଲା। ମୋର ମନେହୁଏ ଏହା ଏକ ସାଧାରଣ ଅଜାନାତି ରହସ୍ୟ ନୁହେଁ। ଏହା ଭିତରେ ଏକ ସମାଜ ସଂସ୍କାରର ମହନୀୟ ଭାବ ଲୁଚି ରହିଛି ଯେଉଁଥିରେ କି ପୁରାତନ ଓ ନବୀନର ରୀତିମତ ସଂଘର୍ଷ ଦେଖିବାକୁ ମିଳେ। ଏକ ଦୃଢ଼ ମଜଭୁତ ବୁନିଆଦି କୁସଂସ୍କାର ଉପରେ ଯେପରି ଏକ ନୂତନ ଓଜନଦାର ହାତୁଡ଼ିର ଦୁରନ୍ତ ପ୍ରହାରର ଆଓ୍ୱାଜ ଶୁଣାଗଲା ପରି ମନେହେଲା ମୋର"।

ଜଗନ୍ନାଥବାବୁ ତାଙ୍କର ଚିରାଚରିତ ନାଟକୀୟଭଙ୍ଗୀରେ ହସି ହସି କହିଲେ—

Digitized by srujanika@gmail.com

ମି: ରାଏ, ଏ ଗାଁର ମାଟିଗୋଡ଼ିରେ ଆପଣ ଦେଖିବାକୁ ପାଇବେ ପୁରାତନ୍ ଓ ନୂତନର ଏକ ଅପୂର୍ବ ସମନ୍ୱୟ । ଶୁଣନ୍ତୁ :

"ଏ ଗ୍ରାମର ଅଧିଷ୍ଠିତ ଦେବତା ବିଶ୍ୱେଶ୍ୱର ମହାଦେବ ହେଲେ ମଧ୍ୟ ପ: ବ୍ରଜବନ୍ଧୁ କର ପୁତ୍ର ପ୍ରାପ୍ତିର ମାନସିକ କରି ଗଣପତି ପୂଜା କରିଥିଲେ ଏବଂ ତାହା ବିଗତ ଏକ ଶତାବ୍ଦୀରୁ ଊର୍ଦ୍ଧ୍ୱ ହେବ ଏ ଗ୍ରାମର ଜାତୀୟ ପର୍ବ ଭାବରେ ପାଳିତ ହୋଇ ଆସୁଅଛି । ଏହି ଗଣପତି ଆରାଧନା ପାଇଁ ଅନେକେ ଏ ବଂଶର ପୂର୍ବପୁରୁଷମାନେ ମହାରାଷ୍ଟ୍ରରୁ ଆସିଥିବାର ଅନୁମାନ କରନ୍ତି ଯଦିଓ ପୁରୀଜିଲ୍ଲାର ଅପଭ୍ରଷ୍ଟ ବୀରାମଚନ୍ଦ୍ରପୁର ଶାସନରୁ ଏହି ଗ୍ରାମକୁ ପ୍ରାୟ ଦୁଇଶହ ବର୍ଷ ପୂର୍ବେ ଦୁଇଭାଇ ଆସି ବସତି ସ୍ଥାପନା କରିଥିଲେ ଏବଂ ଏହାର ପ୍ରମାଣ ବୈବାହିକ କାର୍ଯ୍ୟ ସମ୍ପାଦନବେଳେ ଶୁଣିବାକୁ ମିଳେ । ସେ ଯାହାହେଉ ଏହି ଗଣେଶ ପୂଜା ଏ ଗ୍ରାମର ଜାତୀୟ ପର୍ବ, ଯାହାପାଇଁ କି ଆପଣ ନିମନ୍ତ୍ରିତ ।"

"ତେବେ ଏ କାନ୍ଥରେ ଲେଖା ହୋଇଥିବା ଏ ସ୍ଲୋଗାନ୍‌ର ତାତ୍ପର୍ଯ୍ୟ କ'ଣ ?" କନ୍ହାନ୍ତ ପ୍ରଶ୍ନ କଲେ ।

"ମୁଁ ଠିକ୍ ସେହି କଥା କହିବାକୁ ଯାଉଛି । ଗତ ରଜସଂକ୍ରାନ୍ତିର ଅବ୍ୟବହିତ ପୂର୍ବରୁ ଏହି ଗ୍ରାମର ନୀଳାଦ୍ରି ଦାଶଙ୍କ ଜମି ଚାଷ ପାଇଁ ମୂଲିଆମାନେ ହରକତ କଲେ । ଜମି ପାଗିଗଲାଣି । ଯଥାଶୀଘ୍ର ଚାଷ ନ କଲେ ବୁଣାବୁଣି କାମ ହୋଇ ପାରିବ ନାହିଁ । ନୀଳାଦ୍ରି ବ୍ୟସ୍ତ । କ'ଣ କରିବା, ଏହି ଆଲୋଚନାବେଳେ ନୀଳାଦ୍ରି କାହିଁକି ନିଜେ ହଳ ଧରୁନାହାନ୍ତି ବୋଲି ପ୍ରଶ୍ନ ଉଠିଲା । ନୀଳାଦ୍ରି ହଳ ଧରିପାରିବେ ମାତ୍ର ସାମାଜିକ ବାଧା ତାଙ୍କୁ ଦ୍ୱିଧାଗ୍ରସ୍ତ କରାଉଛି ବୋଲି ସେ ପ୍ରକାଶ କରିବାରୁ, ଆମେ କେତେଜଣ ତାଙ୍କୁ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେବାରେ ସେ ନିଜେ ହଳଧରି ଏକ ଯୁଗାନ୍ତର ସୃଷ୍ଟି କରିଥିଲେ ଏବଂ ସେହି ଦିନଠାରୁ ଏହି କେତେମାସ ଧରି ଏହି ଗ୍ରାମ ହଳୁଆ ନିହଳୁଆ ହୋଇ ଦୁଇଭାଗ । ସମସ୍ତ ଯୁବସମ୍ପ୍ରଦାୟ ବାହାରିଛନ୍ତି ନୀଳାଦ୍ରିକୁ ସମର୍ଥନକରି ଓ କେତେକ ବୃଦ୍ଧ ପୁରାତନପନ୍ଥୀ ଏହାର ବିରୁଦ୍ଧରେ । ଏହାରି ପରିପ୍ରକାଶ ଏ କାନ୍ଥ ଉପରେ । କିନ୍ତୁ ଦେଖନ୍ତୁ, ଗଣେଶପୂଜା ଉପରେ ଏହାର କୌଣସି ପ୍ରକାର ପ୍ରଭାବ ପଡ଼ିନାହିଁ । ସେହି ଗୋଟିଏ ମନ୍ଦିର, ଗୋଟିଏ ମୂର୍ତ୍ତି; ମାତ୍ର ଆରାଧନା ହୁଏ ଅଲଗା ଅଲଗା, ଗୋଟିଏ ଗୋଷ୍ଠୀ ପରେ ଅପର ଗୋଷ୍ଠୀର୍ । ଠାକୁର ଏକ, ପୂଜା ଦୁଇ । କାମନା ଏକ, ପ୍ରାପ୍ତିର ମାର୍ଗ ଭିନ୍ନ ।

Digitized by srujanika@gmail.com

ଅଧ୍ୟାପକ କନ୍ଦ୍ରାନ୍ତଙ୍କ ବିମୁଗ୍ଧ ହୃଦୟରୁ ବାହାରି ଆସିଲା –''କି ଅପୂର୍ବ ସମନ୍ୱୟ । ଗୋଟିଏ ଉସ ଦୁଇଟି ଧାର, ପୁଣି ଏକଇ ସଙ୍ଗମ । ଆରମ୍ଭ ଯେଭଳି ସମାପ୍ତି ସେଇଭଳି'' ।

ଦୂରରୁ ଅନ୍ଧଶିବଙ୍କର ଖଞ୍ଜଣି ମାଦ୍ରର ତାଳରେ ଭାସି ଆସୁଛି ସ୍ୱେଇ ଗଣପତି ମନ୍ଦିର ପ୍ରାଙ୍ଗଣରୁ ''ଏହି ହୋଇଛି ସେଇ, ସେହି ହୋଇଛି ଏଇ, ଏହି ସେହି ଭିତରେ ତ ପ୍ରଭେଦ ନାହିଁ ।'' ଏହି ନିତ୍ୟ ଶାଶ୍ୱତ ସନାତନ ବାଣୀ ଯେପରି ସମ୍ପୂର୍ଣ୍ଣ ଭାବରେ ପ୍ରତିଫଳିତ ହୋଇଛି ଏହି ଗ୍ରାମର ପ୍ରତିଟି ଅଣୁ ପରମାଣୁରେ ।

ଜଗନ୍ନାଥବାବୁ କହିଲେ ''ଶୁଣନ୍ତୁ କନ୍ଦ୍ରାନ୍ତ, ହୁଏତ ଏହି ସ୍ୱାଧୀନ ଭାରତର ବାଳସୂର୍ଯ୍ୟର ଅରୁଣିମା ଭିତରେ ଯେ ଏତେ ତେଜ ଭରି ରହିଥିଲା ଏକଥା ଆପଣଙ୍କର କଳ୍ପନାର ଦିଗନ୍ତ ଭିତରେ ହୁଏତ ନ ଥିବ । ସେଦିନର ସେହି ଜ୍ୟୋତ୍ସ୍ନାବିଧୌତ ବାସନ୍ତୀ ସନ୍ଧ୍ୟାର ଆଲୋଡନ ନ ଦେଖିଲେ ଆପଣ ବିଶ୍ୱାସ କରିପାରିବେ ନାହିଁ ଅଧ୍ୟାପକ ମହାଶୟ, ଯେ ଏ ଦେଶରେ ଏ ଟିକି ପିଲାଙ୍କର ମନରେ କି କ୍ରାନ୍ତିକାରୀ ଶକ୍ତି ପୂରି ରହିଛି ଏବଂ ସେମାନେ କିପରି କଥାରେ ନୁହେଁ କାମରେ ମଧ କରି ଚକିତ କରାଇ ଦେଉଛନ୍ତି ବେଳେବେଳେ ସ୍ୱତଃସ୍ଫୂର୍ତ୍ତ ଭାବରେ ।''

''ଆପଣ ଜାଣନ୍ତି ଏହି ଗ୍ରାମର ବ୍ରାହ୍ମଣମାନଙ୍କର ସ୍ୱାଭିମାନ ଓ ଗାରିମା । ଅଥଚ ଶ୍ରୀରାମଚନ୍ଦ୍ରଙ୍କ ସେହି ଅଭିଶାପର ଫଳ ଏମାନଙ୍କ ମଧ୍ୟରୁ କେତେକଙ୍କୁ ଏବେ ମଧ ନିଜର ଅପରିଣାମଦର୍ଶୀ ଚିନ୍ତା ଓ କାର୍ଯ୍ୟ ପାଇଁ ଚଳିବାକୁ ପଡୁଛି ଦାରିଦ୍ର୍ୟର କଶାଘାତ ମଧ୍ୟରେ । ଏହିପରି ସୁଯୋଗରେ ଅନେକ ବ୍ରାହ୍ମଣେତର ବର୍ଗ ନିଜ ପିତୃକାର୍ଯ୍ୟରେ ସେମାନଙ୍କୁ ଭୋଜନ ଓ ଦକ୍ଷିଣା ଦେଇ ନିଜର ଗୌରବ ବଢ଼ାଇବାର ଅଦମ୍ୟ ବାସନାକୁ ଚରିତାର୍ଥ କରୁଛନ୍ତି ନିଜ ନିଜ ଭିତରେ ପ୍ରତିଦ୍ୱନ୍ଦ୍ୱିତା କରି ।''

ହାଟୁଆବର୍ଗଙ୍କ ଘରେ ଯେକୌଣସି କାର୍ଯ୍ୟରେ ମଧ ବ୍ରାହ୍ମଣର ଭୋଜନ ପ୍ରଚଳ ନାହିଁ । ଶ୍ରୀ ଧଡ଼ି ସାହୁ ହେଉଛନ୍ତି ଆଖପାଖ ପାଞ୍ଚଖଣ୍ଡ ମୌଜାର ଜଣେ ଧନୀ ବ୍ୟବସାୟୀ । ତାଙ୍କ ମା'ଙ୍କ ଏକାଦଶାହ କାର୍ଯ୍ୟରେ ସେ କିଛି ବ୍ରାହ୍ମଣ ଭୋଜନ କରାଇବାର ଇଚ୍ଛା କରି ଆଖପାଖ ଶାସନରେ ନିମନ୍ତ୍ରଣ କରିଦେଇ ଯାଇଥା'ନ୍ତି । ଏହି ଗ୍ରାମର ପିଲାମାନେ ସନ୍ଧ୍ୟାରେ ସ୍କୁଲରୁ ଫେରି ଶୁଣିଲେ ଧଡ଼ି ସାହୁ ଘର ଚୂଡ଼ା ଦହି ପାଇଁ ଗାଁର କେତେକ ବ୍ୟକ୍ତି ଯାଇଛନ୍ତି । ପିଲାଏ ବ୍ୟାଗ୍‌ବସ୍ତାନି ଘରେ ଫୋପାଡ଼ି ଦେଇ ଧାଇଁଲେ ଧଡ଼ି ସାହୁଙ୍କ ଘରକୁ । ଯାଇ

Digitized by srujanika@gmail.com

ଦେଖିଲେ ଏକ ବିରାଟ ସଭା ବସିଛି । ପ୍ରତ୍ୟେକ ଶାସନର ବ୍ରାହ୍ମଣ ମହାରାଜମାନେ ସେଠାରେ ବିରାଜମାନ । ଧଡ଼ି ସାହୁ ସେଠାରେ ଯୋଡ଼ହସ୍ତରେ ଦଣ୍ଡାୟମାନ । ମୂଲଚାଲ ଚାଲିଛି । ଯେହେତୁ ବ୍ରାହ୍ମଣମାନଙ୍କର ଏହା ପ୍ରଥମଥର ପାଇଁ ଏକ ହାଟୁଆବର୍ଗଙ୍କ ଘରେ ଭୋଜନ କରିବାକୁ ହେବ ତେଣୁ ଯଥେଷ୍ଟ ପରିମାଣର ଶାସନ ମର୍ଯ୍ୟାଦା ନ ହେଲେ ଏହା ସମ୍ଭବ ନୁହେଁ । ଏ ମୂଲଚାଲ ଉଭୟପକ୍ଷର ମର୍ଯ୍ୟାଦାର ଅନୁକୂଳ ହେଉ ନ ଥିବାରୁ ତାହାର କୌଣସି ସମାଧାନ ହୋଇପାରୁ ନ ଥାଏ । ଏଣେ ରାତ୍ରିର ପ୍ରଥମ ପ୍ରହର ଗଡ଼ିବାକୁ ବସିଲାଣି । ଏହି ଗ୍ରାମର ଜଣେ ବାଳକ ବିଭିନ୍ନ ଶାସନର ତାହାର ଯେଉଁ ସ୍କୁଲ ସାଥୀମାନେ ଉପସ୍ଥିତ ଥିଲେ, ସେମାନଙ୍କୁ ଏକତ୍ରିତ କରି କହିଲା, 'ଯଦି ହାଟୁଆଙ୍କ ଘରେ ନ ଖାଇବା କଥା ଏମାନେ ଆସୁଥିଲେ କାହିଁକି ? ଏବଂ ଯଦି ଆସିଲେ ଅର୍ଥର ମୂଲରେ ଜାତିର ମର୍ଯ୍ୟାଦା କିପରି ରହିବ କେହି ବୁଝିପାରୁଛ ?'

''ସବୁରି ମନରେ ସେହି ପ୍ରଶ୍ନ । ମାତ୍ର ଭରସି କହିପାରୁ ନ ଥା'ନ୍ତି କେହି । ଯାହାହେଉ ବର୍ତ୍ତମାନ ବିଲେଇ ବେକରେ ଘଣ୍ଟି ବନ୍ଧା ହୋଇଗଲା । ମୂଷାଏ ଏକଜୁଟ । ପେଟରେ ତାଙ୍କର ଚୁହା ଦୌଡୁଥାଏ । ତେଣୁ କୁନି ବ୍ରାହ୍ମଣଙ୍କର ମିନିସଭାରେ ସର୍ବସମ୍ମତି ପ୍ରସ୍ତାବ ଗୃହୀତ ହେଲା ଯେ ସେମାନେ ଧଡ଼ି ସାହୁଙ୍କ ଘର ଭିତରେ ଯାଇ ଖାଇବେ । ସେଇଆ ହେଲା, ପିଲାଏ ଖାଇସାରି ଆସି ଗାଁରେ । ପରେ ପରେ ଶାସନର ତଥାକଥିତ ଥାନପତିମାନେ ରାଗ ତମତମ ହୋଇ ଫେରିଗଲେ । ଗାଁରେ ହେଲା ତୁମୁଳ କାଣ୍ଡ । ଏ ଘଟଣାର ମୂଳ କୁନା ଘରେ ଯାଇ ସମ୍ପତ୍ତେ ପହଞ୍ଚିଲେ । ସେ ପିଲାର ବାପା ଜଣେ ଅତି ପ୍ରାକ୍ଟିକାଲ ମଣିଷ ହେଲେ ମଧ ଭୀଷଣ କ୍ରୋଧୀ । କାଳେ କ'ଣ ଘଟିବ, ଏ ଆଶଙ୍କାରେ କଥାଟା ଶୁଣି ମୁଁ ଯାଇ ସେଠାରେ ପହଞ୍ଚିଲି । ସୂର୍ଯ୍ୟା ମଧ ସେଇକଥା କହୁଥିଲା । ''ଜଗାନା ଏଥର ଏ ଚୁଡ଼ା ଦହି ଖାଇବା ଧନ୍ଦା ଏ ଗାଁରେ ବନ୍ଦ କରାଯାଉ । ପିଲାଏ କ'ଣ ଭୁଲ କଲେ ? ଯଦି ତୁମର ସବୁ ଏତେ ଜାତିପ୍ରେମ, ଯାଉଥିଲ କାହିଁକି ? ଆଉ ଯାଇ ସେଠି କାହିଁକି ହଡ଼ାବେପାରୀ ହାଟ ଭିତରେ ମୂଲଚାଲ ଭଳି ନାଟକ ଚାଲିଥିଲା ? ଏଥିରେ ଏ ଶାସନର କୋଉ ମର୍ଯ୍ୟାଦା ବଢୁଥିଲା ? ଏଥିରେ ପୁଣି ପିଲାଏ ଯାଙ୍କ ମାନସମ୍ମାନ ସବୁ ତଳେ ପକେଇଦେଲେ !!''

''ତା କଥାକୁ ମୋର ସମର୍ଥନ ଦେଖି ଥାନପତିମାନେ ଧୀରେଧୀରେ ସ୍ଥାନ ତ୍ୟାଗ କଲେ । ପିଲାଏ ବିଜୟ ଉଲ୍ଲାସରେ ଜ୍ୟୋସ୍ନାମୁଖରିତ ନିଝୁମ ରାତିକୁ ହାସ୍ୟମୁଖର କରି ପକାଇଲେ ।''

Digitized by srujanika@gmail.com

"ବାଃ! ବାଃ! ଅଦ୍ଭୁତ! ଅଦ୍ଭୁତ! ଧନ୍ୟ ଧନ୍ୟ ଏ ମାଟିର ପ୍ରଭାବ । ମୂକର ମୁହଁରେ ଭାଷା ଫୁଟାଇ ଜାଣିଥିବା ଏ ମାଟିକୁ ମୋର ଶତ ନମସ୍କାର ।" ହଠାତ୍ ମୁହଁରୁ ବାହାରି ପଡ଼ିଲା ଅଧ୍ୟାପକ କଳ୍ପାନ୍ତଙ୍କର ।

ଜଗନ୍ନାଥବାବୁ କହି ଚାଲିଲେ, "ଶୁଣ କଳ୍ପାନ୍ତ, ଅନ୍ୟ ଉପାଖ୍ୟାନଟି । କାଲି ରାତିରେ ଦେଖିଲେ ତ ଅଲ୍ଲୁ ମିଆଁ କିପରି ସମସ୍ତଙ୍କ ମେଳରେ ବସି ଗଣେଶଙ୍କ ଭୋଗ ଖାଉଥିଲା । ଆଉ କି ଆଗ୍ରହ ସହକାରେ! ଏହାର ଆରମ୍ଭ ଶୁଣ ।"

"ଏ ଶାସନର ଆରମ୍ଭ ଯେଉଁଠାରୁ ସେହି ମୁହଁର ସାହିକୁ କହନ୍ତି ମଠସାହି । ସେହି ସାହି ନାରଣର ବିଭାଘର୍ ଏଠାରୁ ତିନି କୋଶ ଦୂର ମହାଦେଇପୁର ଶାସନରେ ହେଉଥାଏ । ବରଯାତ୍ରୀ ହୋଇ ଏ ଗାଁର ସବୁ ପାଟକର ଲୋକେ ଯାଇଥା'ନ୍ତି । ପଙ୍ଗତ ବସିଲାବେଳେ ସମସ୍ତ ବରଯାତ୍ରୀ ଏକାଠି ବସିବାକୁ ଗଲେ । ସୂର୍ଯ୍ୟମଣିର ସେ ଚଗଲା ପୁଅଟା ପୁଣି ଏକ କାଣ୍ଡ କରି ବସିଲା । ପଙ୍ଗତର ବ୍ରାହ୍ମଣମାନଙ୍କ ଧାଡ଼ି ଯୋଉଠି ସରିଲା ସେଠାରୁ ଅଳ୍ପ ଛାଡ଼ି ଅନ୍ୟବର୍ଗର ବରଯାତ୍ରୀମାନଙ୍କ ପାଇଁ ଆସନ ପଡ଼ିଥିଲା । ସେହି ଫାଙ୍କା ଜାଗାରେ ଖଣ୍ଡେ ପତ୍ର ଧରି ବସିପଡ଼ିଲା । ମହାଦେଇପୁର ଶାସନରେ ଏହା ଏକ ଅଭୂତପୂର୍ବ ଘଟଣା । ବ୍ରାହ୍ମଣ ଓ ଅନ୍ୟ ସମ୍ପ୍ରଦାୟର ଲୋକେ ଏକା ପଙ୍ଗତରେ, ପୁଣି ଲଗାଲଗି ହୋଇ ଗୋଟିଏ ଧାଡ଼ିରେ ବସିବେ !! ହେବନି ସେକଥା । ଟୋକାଟା ବି ଭାରି ଜିଦିଆ । କହିଲା 'ବରଯାତ୍ରୀରେ ଏକାଠି ଆସିବେ, ଆଉ ଖାଇଲାବେଳକୁ ଅଲଗା । ଯଦି ଜାଗା ନ ଥାନ୍ତା ତାହାହେଲେ ଅନ୍ୟକଥା । ସେକଥା ହେବନି । ଯଦି ଉଠିବି ଏକାଥରେ ଘରକୁ ଯିବି ।' ତାକୁ ବୁଝେଇବ କିଏ ? ବର ନାରଣ ତା'ର କକେଇ, ତାକୁ କହିଲେ କାଳେ ସେ ବୁଝାବୁଝି କରିଦେବ । ତେଣୁ ତା'ପାଖରେ ଖବର ପହଞ୍ଚିଲା । ସେ ଶୁଣିବାର ଫଳ ହେଲା ଓଲଟା । ପଙ୍ଗତରେ ତା'ର ପିଲାଦିନର ସାଥୀମାନେ ଅଛନ୍ତି । ଏକଥା କଲେ ସେମାନେ ଅପମାନିତ ହେବେ । ତେଣୁ ତା'ପୁତୁରା ଯାହାକରିଛି ଠିକ୍ କରିଛି କହି, କହିଦେଲା 'ଯଦି ମହାଦେଇପୁରର ଏଥିରେ ଅମର୍ଯ୍ୟାଦା ହେଉଛି ବୋଲି ସେମାନେ ମନେ କରୁଛନ୍ତି, ତା'ହେଲେ ମୁଁ ମଧ୍ୟ ମୋ ସାଙ୍ଗମାନଙ୍କର ଅମର୍ଯ୍ୟାଦା କରିପାରିବି ନାହିଁ କୁନାକୁ ସେଠାରୁ ଉଠିଯିବାକୁ କହି । ସେ ଯଦି ସେଠି ବସି ନ ଥାନ୍ତା ତାହାହେଲେ କଥାଟା ଏତେ ଗୁରୁତ୍ୱପୂର୍ଣ୍ଣ ହୋଇ ନ ଥାନ୍ତା । ବର୍ତ୍ତମାନ କଥାଟା ଅନ୍ୟପ୍ରକାରର । ଏଭଳି ଅବସ୍ଥାରେ ଯଦି ମହାଦେଇପୁରିଆ ଏହା ନ ଚାହୁଁଛନ୍ତି ତାହାହେଲେ ବରଂ ବାହାଘର ବନ୍ଦ ହେଉ' ।

Digitized by srujanika@gmail.com

କନ୍ହାନ୍ତ ହୋ ହୋ ହୋଇ ହସି ଉଠିଲେ ଓ କହିଲେ "ଉପଯୁକ୍ତ କଥା କହିଛନ୍ତି ନାରଣ ବାବୁ" ।

"ସମସ୍ତଙ୍କର ଅକଲ ଗୁଡୁମ୍ । କାନ ନାକ ମୋଡ଼ିହୋଇ ପରିବେଷଣ ଚାଲିଲା । ବିଜୟ ଉନ୍ମାଦରେ ଯୁବ ବରଯାତ୍ରୀଏ ଏତେ ଖାଇଲେ ଯେ, ପରେ ଶୁଣିବାକୁ ମିଳିଲା ମହାଦେଈପୁରିଆ ପରଦିନ କୁଆଡ଼େ ଆଉଥରେ ଗାଁ ନିମନ୍ତ୍ରଣ ପାଇଲେ ବାହାଘର ଦିନ ଭୋଜିରେ ତୃପ୍ତି ପାଇ ନ ଥିବାରୁ ।"

କଥା ସରିଲାବେଳକୁ, ଚା' ଆସର ମଧ୍ୟ ସରିଯାଇଥାଏ । ଚା' ପାନ ପର ଅନ୍ୟାନ୍ୟ ନିତ୍ୟକର୍ମ ବଢ଼ାଇବାକୁ ଉଠିଗଲେ ଜଗନ୍ନାଥବାବୁ କନ୍ହାନ୍ତଙ୍କୁ ନେଇ ।

* * * * * *

ସ୍ୱାଧୀନ ଭାରତର ସୁବର୍ଣ୍ଣ ଜୟନ୍ତୀ ପାଳନର ସମୟ ଆସିଗଲାଣି । ସେ ପୁରୁଣା ଦିନ ସବୁ ଆଉ ନାହିଁ । ଗାଁ ଗଣେଶଘାଟରେ ସାରୁପତ୍ର ସବୁକୁ ବାଉଁଶ କଣିରେ ଗୁଞ୍ଚି, ଆଣ୍ଟୁଏ ପାଣିରେ ପୋତି, କୁରୁମ ଧରିବାର ମଜା ନାହିଁ, କାରଣ କୁରୁମଙ୍କ ବଂଶ ନିପାତ । ଦେବୀଗଣ୍ଡ ପୋତି ହୋଇଗଲାଣି । ପବନ ଉଜାଣି ବହିଲାଣି । ଯେଉଁ 'ଜାତିର ବାଡ଼', ଏ ଗାଁର ପିଲାଏ ଭାଙ୍ଗିଥିଲେ, ତାଙ୍କରି ପିଲାଏ ଏବେ ସରକାରୀକୃତ ନୂତନ ରିଇନ୍‌ଫୋର୍ସଡ୍ କଂକ୍ରିଟ ବାଡ଼ ଦ୍ୱାରା ତାଙ୍କ ବାପାଙ୍କ ବନ୍ଧୁମାନଙ୍କ ପିଲାଙ୍କ ଠାରୁ ଅଲଗା । ସତେ କ'ଣ ଗଣତାନ୍ତ୍ରିକ ସମାଜବାଦକୃତ ଏ 'ବର୍ଲିନ ପ୍ରାଚୀର' ଭାଙ୍ଗିବ !!

Digitized by srujanika@gmail.com

# ଖଜୁରୀ ଗଛ

ଡିସେମ୍ବର ଶେଷ ଓ ଜାନୁୟାରୀ ପ୍ରଥମ ସପ୍ତାହରେ ଭୁବନେଶ୍ୱରର କୋମଳ ଶୀତଳ ପରିବେଶର ଯେ ଆନନ୍ଦ ତାକୁ ପଛରେ ପକାଇ ଦିଲ୍ଲୀର ସେ କଟୁତିକ୍ତ ଥଣ୍ଡା ଅବସ୍ଥିତି ଭିତରକୁ କିଏବା କାହିଁକି ଯିବାକୁ ମନ ବଳେଇବ ? ତଥାପି ଆମ ପାରିବାରିକ ନିର୍ଦ୍ଦେଶନାମା ହେଉଛି "ଛାଡ଼ ପିତୃକାର୍ଯ୍ୟ କର ରାଜକାର୍ଯ୍ୟ" । "ପିତା ସ୍ୱର୍ଗଃ, ପିତା ଧର୍ମଃ, ପିତାହି ପରମମ୍ ତପଃ" ଏହି ଋଷିବାକ୍ୟ ମଧ୍ୟ ଉପଯୁକ୍ତ ନିର୍ଦ୍ଦେଶନାମା ପରିପ୍ରେକ୍ଷୀରେ ବାତିଲ ।

ତୁରନ୍ତ ଡାକସେବାର ଦୟାରୁ ୧୯୯୨ ଡିସେମ୍ବର ତା୨୮ରିଖ ଦିନ ଏକ ପତ୍ର ହସ୍ତଗତ ହେଲା, ଜାନୁୟାରୀ ତା୬ରିଖରେ ଏକ ଜରୁରୀ କାର୍ଯ୍ୟରେ ମୋତେ ଦେଶର ରାଜଧାନୀରେ ଉପସ୍ଥିତ ରହିବାକୁ ପଡ଼ିବ । ସରକାରଙ୍କର ଖର୍ଚ୍ଚକାଟ ନୀତି ଯେଉଁମାନଙ୍କ ପ୍ରତି ବିଶେଷ ଭାବରେ ଲାଗୁ, ମୁଁ ଜଣେ ସେହି ବର୍ଗର ସରକାରୀ କର୍ମଚାରୀ ହୋଇଥିବାରୁ ବ୍ୟୋମଯାନ ଯାତ୍ରାର ସୁଯୋଗରୁ ବଞ୍ଚିତ । ତେଣୁ ଅଗତ୍ୟା ବାଷ୍ପୀୟଶକଟର ସଦ୍‌ବ୍ୟବହାର କରିବାକୁ ପଡ଼ିବ । ସୁତରାଂ ତା୪ରିଖରେ ନ ବାହାରିଲେ ତା୬ରିଖ କାର୍ଯ୍ୟରେ ଯୋଗଦାନ ଦେବା ସମ୍ଭବ ନୁହେଁ । ସଙ୍ଗେ ସଙ୍ଗେ ତା୪।୧।୯୩ରିଖ ନୀଳାଚଳ ଦ୍ରୁତଗାମୀ ବାଷ୍ପୀୟଶକଟରେ ଦିଲ୍ଲୀପାଇଁ ଟିକେଟ କଟାହେଲା ଶୀତାତପ-ନିୟନ୍ତ୍ରିତ ବଗିରେ ।

୪।୧।୯୩–ପୁରୀ ନୂଆଦିଲ୍ଲୀ ଅତିଦ୍ରୁତଗାମୀ ନୀଳାଚଳ ବାଷ୍ପୀୟଶକଟ ଆଶ୍ଚର୍ଯ୍ୟ ପ୍ରକାରେ ଠିକ୍ ସମୟରେ ଭୁବନେଶ୍ୱର ପ୍ଲାଟଫର୍ମରେ ପହଞ୍ଚିଲା । ଯାତ୍ରୀମାନଙ୍କ ମନରେ ସନ୍ଦେହ ହେଲା, ହୁଏତ ଏହା ୨୪ଘଣ୍ଟା ବିଳମ୍ବରେ ପହଞ୍ଚିଛି । ସେ ଯାହାହେଉ ୱେଟିଂ ଲିଷ୍ଟର ୫ ନମ୍ବରରେ ଥିବା ମୋ ଟିକେଟ୍‌ଟି, ଇମାରଜେନ୍‌ସି କୋଟାରେ A2/22 ବର୍ଥକୁ କନ୍‌ଫର୍ମ ହୋଇଥିବାର ସୂଚନା ବଗି ମୁହଁରେ ମରାହୋଇଥିବା 'ଲିଷ୍ଟକୁ ଦେଖି ନିଶ୍ଚିନ୍ତ ମନରେ ଯାଇ ନିଜ ସ୍ଥାନ ଦଖଲ କଲି । ଆଗରୁ ତିନିଜଣ ଲୋକ ସେଠାରେ ବସି ରାଜଭାଷା, ଅର୍ଥାତ୍ ହିନ୍ଦିରେ ବହୁତ ସରଗରମ ଆଲୋଚନା କରୁଥା'ନ୍ତି । ସେଥିରୁ ଜଣେ ମୋତେ ଉଦ୍ଦେଶ୍ୟ କରି କହିଲେ "ଆପକା ବର୍ଥ ଉନ୍‌ତିଶ ହୋଗା" ।

Digitized by srujanika@gmail.com

କହିଲି, "ଦ୍ୱାରମୁହଁରେ ଲାଗିଥିବା ଲିଷ୍ଟରେ ଦେଖିଲି ମୋ ନାମ ୨୨ ନମ୍ବରରେ ଓ ୨୯ ନମ୍ବରରେ ଅନ୍ୟଜଣେ କାହାର ନାମ ଉଲ୍ଲେଖ ରହିଛି । ଭିତରେ ପୁଣି ଏହା ଓଲଟି ଗଲା କିପରି ?"

ଭଦ୍ରଲୋକ ଜଣକ ଓଡ଼ିଆ ବୁଝିଲେ କି ନାହିଁ ଜାଣେନା, ଆପାତତଃ ଏ କଥା ସେତିକିରେ ରହିଗଲା । କଥାବାର୍ତ୍ତାରୁ ବୁଝିଲି, ବାବୁମାନେ ଖୋର୍ଦ୍ଧା ରୋଡ଼୍‌ରୁ ବସିଛନ୍ତି । ରେଳବାଇର କୌଣସି ପଦସ୍ଥ କର୍ମଚାରୀ ଛୁଟୀରେ ଯାଉଥିବାରୁ, କଟକ ରେଳଷ୍ଟେସନ୍‌ରେ ଚାକିରୀ କରୁଥିବା କେତେକ କ୍ଷେତ୍ରକର୍ମଚାରୀ 'ସାର୍'ଙ୍କୁ ଖୁସିକରିବା ପାଇଁ ଖୋର୍ଦ୍ଧାରୋଡ଼୍‌ରୁ ସାଙ୍ଗ ହୋଇଛନ୍ତି । କଟକ ଷ୍ଟେସନରେ ଗାଡ଼ି ଲାଗିବା ସଙ୍ଗେ ସଙ୍ଗେ ସେଥିମଧ୍ୟରୁ ଦୁଇଜଣ ଭଦ୍ରଲୋକ ଯିବାକୁ ବାହାରିଲେ ଓ ତାଙ୍କୁ ବଳେଇ ଦେବାକୁ ୩ୟ ବ୍ୟକ୍ତି ଜଣକ ମଧ ପ୍ଲାଟଫର୍ମ ଉପରକୁ ଓହ୍ଲେଇ କିଛି ସମୟ ପରେ ଫେରିଆସି ହଠାତ୍ ନିଜଆଡୁ ହାତ ବଢ଼ାଇ ସମ୍ଭାଷଣ ଜଣାଇଲେ ।

"ହେଲୋ ଆର୍ ୟୁ ଡା: କର ? ଆଇ ଆମ୍ ମି: ଦିବଙ୍ଗନ୍, ସିନିଆର୍ ଡି: ଇନ୍, ଏସ୍ ଇ: ରେଲ୍‌ଉୟେ ଖୁର୍ଦ୍ଧାରୋଡ଼୍ । ଆର୍ ୟୁ ଫ୍ରମ୍ ମଞ୍ଚେଶ୍ୱର୍ ?

ଉତ୍ତରରେ କହିଲି, "ଥାନ୍‌କିୟୁ ଭେରିମଚ୍ । ଆଇ ଆମ୍ ନଟ୍ ଏ ରେଲ୍‌ଉୟେ ମ୍ୟାନ ।"

ଭଦ୍ରବ୍ୟକ୍ତି ଜଣକ ହସି ହସି ନିଜ ଜାଗାରେ ବସିପଡ଼ିଲେ । କିଛି ସମୟ ପରେ ଟି.ଟି.ଇ. ଆସିଲେ । ଟିକେଟ୍ ତନଖି କରି ଯାତ୍ରୀମାନଙ୍କୁ ଯଥାସ୍ଥାନରେ ବସାଇବା ହେଲା ତାଙ୍କର କାମ । ସିଧା ଆସି ମୋ ପାଖରେ ବସିଲେ । ଟିକେଟ୍‌ଟି ବଢ଼େଇ ଦେଲି ତାଙ୍କ ହାତକୁ । ହାତରେ ଥିବା ଚାର୍ଟ ଆଡ଼କୁ ଦେଖି ଟି.ଟି.ଇ. ଜଣଙ୍କ କହିଲେ "ଆପଣଙ୍କର ୨୯ ନମ୍ବର ବର୍ଥ" ।

ପଚାରିଲି, "ବାହାରେ ୨୨କୁ ଭିତରେ ୨୯ କିପରି ହେଲା ? ପୁଣି ୨୯ ନମ୍ବର ବର୍ଥରେ ତ ଦେଖିଲି ଅନ୍ୟଜଣେ କାହା ନାମରେ ରିଜର୍ଭେସନ୍ ରହିଛି" ।

ଟି.ଟି.ଇ. ଜଣଙ୍କ ବଙ୍ଗୀୟ ଭଦ୍ରଲୋକ ବୋଧହୁଏ । ମି: ଚାଉଲିଆ । ଭଙ୍ଗା ଭଙ୍ଗା ଓଡ଼ିଆରେ କହିଲେ "ମୁଁ କନ୍ କରିବି ସାର୍ ? ମୋତେ ଯେମନ ଭାବ୍‌ରେ ଚାଟ ମିଳିଛି, ମୋତେ ସେଟା ହିଁ କରିବାକୁ ହେବ" ।

ପଚାରିଲି, "୨୯ ନମ୍ବର ପାସେଞ୍ଜରଙ୍କ ଅବସ୍ଥା କ'ଣ ହେବ ?"

Digitized by srujanika@gmail.com

ପୂର୍ବ ଭଦ୍ରବ୍ୟକ୍ତି ମି: ଦେବଙ୍ଗନ୍, ଯେକି ଖୁବ୍ ଗମ୍ଭୀରତାର ସହିତ ଆମ କଥୋପକଥନ ଶୁଣୁଥିଲେ, କହି ପକାଇଲେ "ମୁଁ ଫାମିଲିଧରି ଯାଉଥିବାରୁ ଏପରି ପରିବର୍ତ୍ତନ କରାଇଛି" ।

"ଆପଣଙ୍କର ସ୍ପଷ୍ଟୋକ୍ତି ପାଇଁ ଧନ୍ୟବାଦ । ଫାମିଲି ଧରି ଯାଉଛନ୍ତି ଯେତେବେଳେ ଏହା ଖୁସିରେ ମ୍ୟୁଚୁଆଲ ଏକ୍ସଚେଞ୍ଜ ହୋଇପାରିଥାନ୍ତା । କମ୍ପ୍ୟୁଟର ରିଜର୍ଭେସନ୍ ପରେ ଏପରି ମନଖୁସିରେ ବର୍ଥ ବଦଳାଇ ନେବା କ'ଣ ଉଚିତ୍ – ବିଶେଷ କରି ଜଣେ ଉଚ୍ଚପଦସ୍ଥ ରେଳବାଇ କର୍ମଚାରୀଙ୍କ ପକ୍ଷରେ ? ଏହା କ୍ଷମତା ଅପବ୍ୟବହାରର ଏକ ନଗ୍ନ ଉଦାହରଣ ।" ବିରକ୍ତିରେ କହି ପକାଇଲି ।

ମି: ଦେବାଙ୍ଗନ ଅପ୍ରସ୍ତୁତ ହୋଇପଡ଼ିଲେ । ଆଉ ଟି.ଟି.ଇ. ଭଦ୍ରବ୍ୟକ୍ତି ଜଣକ ମଧ୍ୟ ଅଡୁଆ ପରିସ୍ଥିତିରେ ପଡ଼ି ପରିସ୍ଥିତିକୁ ସମ୍ଭାଳିବାକୁ ଯାଇ କହିପକାଇଲେ :

"ଛାଡ଼ନ୍ତୁ ସାର୍, ଆପନ୍ ଚାହିଲେ ଅନ୍ୟ ଏକ ବର୍ଥ କରିଦେବି, ହେଲେ ସାର୍ ଅପାର୍ ହେବ" ।

"ଛାଡ଼ନ୍ତୁ, ଯାହା ହେବାର ହେଲାଣି, ଲମ୍ୱା କମ୍ ହେଲେ ମଧ୍ୟ ସାଇଡ୍ ବର୍ଥଟା ତ, ଚଳିଯିବ", କହି ବସିଲି ୨୯ରେ ଓ ପରିହାସ ଛଳରେ କହିଲି "ଭୁବନେଶ୍ୱରରୁ କଟକ ମଧ୍ୟରେ ୨୨ ଯଦି ୨୯ ହୋଇଯାଏ, ଦିଲ୍ଲୀରେ ପହଞ୍ଚିବା ବେଳକୁ ତାହା ୩୬, ୪୩, ୫୦ ବା ଅନ୍ୟ କେଉଁ ବଗି ହୋଇଯିବ ନାହିଁ ତ ?"

ଟି.ଟି.ଇ. ମହାଶୟ ଟିକିଏ ଅପ୍ରତିଭ ହୋଇପଡ଼ିଥିଲେ । କାରଣ ଜାଣିବା ସମ୍ଭବ ନ ଥିଲା । ଟିକେଟ୍ ଉପରେ AIB,/29 ବୋଲି ଉଲ୍ଲେଖ କରିଦେଇ ସେ ଚାଲିଗଲେ । ହେଲେ ମୋର ସମସ୍ୟାର ଅନ୍ତ ହେଲା ନାହିଁ । ଯଦିଓ ୩୦, ୩୫ ଓ ୩୬ ନମ୍ବର ତିନୋଟି ବର୍ଥଗୁଡ଼ିକ ଯେଉଁ ଯାତ୍ରୀମାନଙ୍କ ନାମରେ ଚିହ୍ନିତ, ପ୍ରକୃତରେ ତାଙ୍କ ଦଳରେ କିନ୍ତୁ ଥିଲେ ଚାରିଜଣ ଯାତ୍ରୀ । ଏକ ପରିବାରର । ଯାତ୍ରୀଦଳର ମହିଳା ସଦସ୍ୟଙ୍କ ନାମରେ କୌଣସି ବର୍ଥ ନାହିଁ । ସେ କିନ୍ତୁ ଜବରଦଖଲରେ ୨୯ ନମ୍ବର ବର୍ଥ ଉପରେ ଜମେଇ ବସିଥାନ୍ତି । ମୋର ବହୁତ ତକ୍‌ଲିଫ୍ । ବାରମ୍ବାର ଭଦ୍ରମହିଳା ଜଣକ ଉଠୁଥାନ୍ତି ବସୁଥାନ୍ତି ପତିଦେବତା ତଥା ପିଲାମାନଙ୍କର ସେବା ପାଇଁ । ପରିଶେଷରେ ସ୍ୱାମୀ ଓ ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ବର୍ଥରେ ଶଯ୍ୟାର ବ୍ୟବସ୍ଥା କରିଦେଇ ୨୯ ନମ୍ବର ବର୍ଥରେ ଚିରସ୍ଥାୟୀ ଭାବରେ ରହିଲାଭଳି ଆସନ ଜମେଇ ଦେଲେ । ମନେହେଲା, ମୋତେ ଏକ ନିରୀହ ସଙ୍ଗହରା ଓଡ଼ିଆ ଯାତ୍ରୀ ବା ଭଙ୍ଗାମନର ଦୁର୍ବଳତା ଘାରିଥିବା ଜଣେ ପରାସ୍ତ ସୈନିକ ମନେକରି ବୋଧହୁଏ ଭଦ୍ର ମହିଳା ଜଣଙ୍କର ଉତ୍ପାତ ବଢ଼ିଚାଲିଥାଏ ।

Digitized by srujanika@gmail.com

କିପରି ଏଥିରୁ ନିଷ୍କୃତି ପାଇବି, ଖାଲି ଚକାଡୋଳାଙ୍କୁ ଡାକିବାରେ ଲାଗିଲି । 'ହେ ଚକାଡୋଳା ! ପତାବିହୀନ ଅପଲକ ତୁମ ଡିମା ଡିମା ଆଖି ଦୁଇଟିକୁ କ'ଣ ତୁମ ପଦହୀନ ପଦ୍ମପାଦରେ ଶୈଶବରୁ ବିକ୍ରିତ ଏହି ଅଧମର ଦୁର୍ଦ୍ଦଶା ଦେଖାଯାଉ ନାହିଁ ? ଏହି ଅଣ ଓଡ଼ିଆ ଅଧ୍ୟୁଷିତ ବଗି ଭିତରେ ଏହି ଓଡ଼ିଆର ଅପମାନ କ'ଣ ତୁମ ଚରାଚିଚାହାଣୀର ଯୋନ୍ ଭିତରକୁ ଆସିପାରୁ ନାହିଁ ? ତୁମେ ଆଉ କି ଓଡ଼ିଆର ଆରାଧ ଦେବତା ?'

ବାଲେଶ୍ୱର ପାରିହୋଇ ଗଲାଣି, ଖଡ଼ଗପୁରରେ ପହଞ୍ଚିବାକୁ ଆଉ ଅଳ୍ପ ସମୟ ବାକି । ଚକାଡୋଳାଙ୍କ ଶୁଭଦୃଷ୍ଟି ବୋଧହୁଏ ପଡ଼ିଲା !! ମି: ଚାଉଲାଙ୍କ ପୁଣିଥରେ ଆବିର୍ଭାବ ଘଟିଲା । ମୁଁ ସେତେବେଳକୁ ଅତିଷ୍ଠ ହୋଇପଡ଼ିଲିଣି । ମି: ଚାଉଲାଙ୍କୁ ପଚାରିଲି, 'ଆପଣଙ୍କ ପୂର୍ବ କଥାନୁସାରେ ଆଉ କୌଣସି ବର୍ଥକୁ ଟ୍ରାନ୍ସଫର ହୋଇପାରିବ ନାହିଁ ? ଏଠି ବଡ଼ ବ୍ୟସ୍ତ ହୋଇ ପଡ଼ିଲିଣି ।' ମି: ଚାଉଲା ନିଜର ଅକ୍ଷମତା ଅତ୍ୟନ୍ତ ଦୁଃଖର ସହିତ ପ୍ରକାଶ କଲାବେଳକୁ, ସୌଭାଗ୍ୟକ୍ରମେ, ୩୦ ନମ୍ବର ବର୍ଥର ଭଦ୍ରବ୍ୟକ୍ତି, ଆଉ ଏକ ବର୍ଥ ପାଇଁ ମି: ଚାଉଲାଙ୍କୁ ଅନୁରୋଧ ଜଣାଇଲେ ।

କାରଣ କ'ଣ ହୋଇପାରେ କହିବା ଦୁରୁହ, ହେଲେ ମି: ଚାଉଲା, ଅନ୍ୟ ଏକ ବଗି A-I ରେ ୧୬ ନମ୍ବର ବର୍ଥଟି ଦେବାକୁ ସମ୍ମତ ହେଲେ ।

ମୋତେ ଚଟ୍ କରି ଗୋଟାଏ ସୁଯୋଗ ମିଳିଗଲା । କହିଲି "ଟି.ଟି. ମହାଶୟ, ୧୯, ୨୦, ୨୧ ବର୍ଥବାଲାଙ୍କୁ ୨୨ ଦେଇ ଯଦି ଖୁସି କରାଯାଇପାରିଲା, ୩୦, ୩୫, ୩୬ ବାଲାଙ୍କୁ ୨୯ ଦେବାରେ ଆପତ୍ତି କାହିଁକି ? ମୁଁ A-I-୧୬ ନେବାକୁ ରାଜି ।"

ମି: ଚାଉଲାଙ୍କ ମୁହଁ କିନ୍ତୁ ମୋର ଏଭଳି ଉକ୍ତିରେ ଫିକା ପଡ଼ିଗଲା । ୩୦ ନମ୍ବର ବର୍ଥର ଭଦ୍ରଲୋକ ମୋ ପ୍ରତି କୃତଜ୍ଞତାରେ ଅଧୀର ହୋଇ ମୋ ସୁଟକେସ ଇତ୍ୟାଦି ବୋହି ନେବାକୁ ପ୍ରସ୍ତୁତ ହୋଇପଡ଼ିଲେ । କୃତଜ୍ଞତାର ବାଟୁଳି ବାକୁ ନ ଥାଏ ତାଙ୍କ ଭାଷାରେ । ଦିଲ୍ଲୀ ଢାଞ୍ଚାରେ ଇଂରାଜୀ ତୁହାକୁ ତୁହା ବାହାରି ଆସୁଥାଏ ପାଟିରୁ ।

ମି: ଚାଉଲା ମୋ ଟିକେଟ ଉପରେ ବର୍ଥ ନମ୍ବର ଲେଖିବାକୁ ଯାଇ ଦେଖିଲେ ସେଥିରେ A2 ଜାଗାରେ ତାଙ୍କ ସ୍ୱହସ୍ତରେ A1 B-29 ଲେଖିଛନ୍ତି ପୂର୍ବରୁ ବାଉଳାରେ । ମୁହଁରେ ଏକ ଶୁଖିଲା ହସ ହସି କହିଲେ—"ଆପଣଙ୍କର A1 ରେ ଯିବା ଅବଧାରିତ ଥିଲା । ତେଣୁ ପ୍ରଥମରୁ ହିଁ A1 ହୋଇଯାଇଥିଲା ।"

Digitized by srujanika@gmail.com

ମୁଁ ମଧ୍ୟ ଗୋଟାଏ ହସ ହସିଦେଇ କହିଲି—'ଆମେ ସବୁ ଅବଧାରିତରେ ବିଶ୍ୱାସୀ, ତେଣୁ ସବୁ କିଛି କରିଥାଉ ଓ ସହିଥାଉ । ଭାଗ୍ୟବାଦୀ ହେଲେ ଯାହାହେବା କଥା ।'

ସେ ଯାହାହେଉ B/29 ଜାଗାରେ ୧୬ ଲେଖି ତାଙ୍କ କର୍ତ୍ତବ୍ୟ ସମ୍ପାଦନ କଲେ ମି: ଚାଉଲା । ହେଲେ ସେ ଏପରି ବିବ୍ରତ ହୋଇ ପଡ଼ିଥିଲେ ଯେ ରିଜାର୍ଭେସନ ଦେୟ ଦଶଟଙ୍କା ମଧ୍ୟ ମୋଠାରୁ ଚାର୍ଜ କରିବାକୁ ଭୁଲିଯାଇଥିଲେ । ପରେ ତାହା ମୋ'ଠାରୁ ମୋଗଲସରାଇ ପରେ ଅନ୍ୟଜଣେ ଟି.ଟି. ଆଦାୟ କରିଥିଲେ ।

ଆଦାୟ ସମୟରେ ମୁଁ ଯେତେବେଳେ ପଚାରିଲି, "ଜଣେ ଟି.ଟି.ଙ୍କ ପାଇଁ ଏ ପ୍ରାପ୍ୟ ଆଦାୟ କରିବା ଦରକାର ପଡୁ ନ ଥିଲା ବେଳେ ଆଉଜଣଙ୍କର କିପରି ଆବଶ୍ୟକ ପଡୁଛି ?"

ଟି.ଟି. ଜଣକ ହସିଲେ ଓ କହିଲେ "ଐସାହି ହୋତା ହେ" ।

ସେ ଯାହାହେଉ ନୂତନ ବଗିର ନୂତନ ବର୍ଥରେ ଟିକେ ନିଃଶ୍ୱାସ ଫେରାଇବାକୁ ସୁବିଧା ମିଳିଲା । ବିଶେଷତଃ ବଗିଟିରେ ଓଡ଼ିଆ ଯାତ୍ରୀ ବେଶ କିଛି ଥିଲେ । ସେଥି ମଧ୍ୟରୁ ୧୪ ଓ ୧୫ ନମ୍ବର ବର୍ଥରେ ସଦ୍ୟ ବିବାହିତ ଏକ ଦମ୍ପତି ଥିଲେ । ବିବାହ ପରେ ନିଜ କର୍ମସ୍ଥଳକୁ ଯାଉଛନ୍ତି । ସ୍ତ୍ରୀଙ୍କୁ ସାମାନ୍ୟ ଥଣ୍ଡାଜ୍ୱର ବୋଧହୁଏ ହୋଇଥାଏ ।

ସଦ୍ୟବିବାହିତା ପତ୍ନୀଙ୍କର ଅସୁସ୍ଥତାରେ ଯୁବକ ସ୍ୱାମୀ ଅତ୍ୟନ୍ତ ବ୍ୟସ୍ତ । ଅନ୍ୟ ଏକ ଦ୍ୱିତୀୟ ଶ୍ରେଣୀରେ ବସିଥିବା ତାଙ୍କର ଜଣେ ବନ୍ଧୁଙ୍କୁ କିଛି ଔଷଧ ଆଣିବାକୁ ବରାଦ କରିଛନ୍ତି । ତାଙ୍କର ଆସିବାର ବିଳମ୍ବରେ ଭଦ୍ରବ୍ୟକ୍ତି ଜଣକ ଉଦ୍‌ବିଗ୍ନ । ତାଙ୍କର ଏ ବ୍ୟଗ୍ରତା, ବ୍ୟସ୍ତତା ଓ ଉଦ୍‌ବିଗ୍ନତାକୁ ଲକ୍ଷ୍ୟକରି, ସହଯାତ୍ରୀ ଆଉଜଣେ ଭଦ୍ରମହିଳା ସଙ୍ଗେ ସଙ୍ଗେ କହିପକାଇଲେ ।

"ମୋ ପାଖରେ କିଛି ଔଷଧ ଅଛି । ଆକୁଆ ଟାଇକୋଟିସମାନେ ଜୁଆଣିଅର୍କ ଠାରୁ ଆରମ୍ଭ କରି, ଆଲ୍‌କା ପାଇରିନ୍, ଡିପେଣ୍ଡାଲ୍, ଇଲେକ୍‌ଟ୍ରାଲ୍‌ର ସବଷ୍ଟିଚ୍ୟୁଟ ଭାବରେ ଲେମ୍ବୁ, ଲୁଣ, ଚିନି, ନିଓସ୍ପୋରିନ୍ ଇତ୍ୟାଦି ସବୁ ଅଛି । ମୁଁ ଏକା ଏକା ଟ୍ରାଭଲ୍ କରେ ତ, ତେଣୁ ହଠାତ୍ କେତେବେଳେ ନିଡ୍ ହେବ ସେଥିପାଇଁ ଏସବୁ ସାଙ୍ଗରେ କ୍ୟାରି କରିଥାଏ । ଅବଶ୍ୟ ଗଡ୍‌ଙ୍କ କୃପାରୁ ମୋର କେବେ ସୋ ମାଚ୍ ଟ୍ରାବୁଲ୍ ହୋଇନି । ଥାର୍ଟିଇଏର୍ସର ଏକ୍‌ସପିରିଆନ୍ସ ନା । ଟ୍ରାଭେଲ

Digitized by srujanika@gmail.com

ସମୟରେ ୱାଟରରେ ଟିକେ ସଲ୍ଟ ଓ ସାମାନ୍ୟ ସୁଗାର ନେଇ ପିଇବାଟା ବହୁତ ଭଲ ।''

ଇଂରାଜୀ ଓଡ଼ିଆ ମିଶା ଭାଷାରେ ଅନର୍ଗଳ ବକ୍ତୃତା ଭଦ୍ର ମହିଳାଙ୍କର । ଶୁଣିବାକୁ ଖୁବ୍ ଇଣ୍ଟେରେଷ୍ଟିଂ ।

ଯୁବ ଯାତ୍ରୀଜଣଙ୍କୁ ପୁଣି ହସି ହସି ପଚାରିଲେ ''ଫିବାର କେତେ ଅଛି ?''

ଯୁବକ ଜଣଙ୍କ ଥତ୍‌ମତ୍ ହେଲେ । କିନ୍ତୁ ଭଦ୍ର ମହିଳା ଜଣଙ୍କ ନଛୋଡ଼ବନ୍ଧା । ହସି ହସି କହିଲେ—''ଓ ଥର୍ମୋମିଟାର ନାହିଁ? ସେଥିରେ କ'ଣ ଅଛି, ତାଙ୍କ ହାଣ୍ଡରେ ହାଣ୍ଡ ରଖି ପାଲ୍‌ସଟା ଦେଖନ୍ତୁ ନା, ଫିବାର କେତେ ଜଣାପଡ଼ିଯିବ । କ'ଣ ଦିସ୍‌ମାଚ୍ କଥା ଆପଣମାନଙ୍କ ଭଳି ପିିଲାଙ୍କର ନଲେଜରେ ନାହିଁ ? ଜ୍ୱର ଭେରିଲିଟିଲି ଥିଲେ, ମାନେ ହାତକୁ ସାମାନ୍ୟ ହିଟ ଜଣାପଡୁଥିଲେ—ମାନେ ଧରନ୍ତୁ ହଣ୍ଡ୍ରେଡ଼ ଭିତରେ ଜ୍ୱର, ଡିପେଣ୍ଡଲ ଦେଇଦିଅନ୍ତୁ । ହେଇ ନିଅନ୍ତୁ, କାଲି ସକାଳକୁ ଠିକ୍ ହୋଇ ଯାଇଥିବେ ଆପଣଙ୍କର ୟଙ୍ଗ୍ ଓ୍ୟାଇଫ୍ ।'' ହାତକୁ ବଢ଼ାଇଦେଲେ ଜବରଦସ୍ତ ଗୋଟିଏ ବଟିକା ।

ଜ୍ୱର ପୁଣି ଡିପେଣ୍ଡାଲ!! ସମସ୍ତେ ଟିକେ ଟିକେ ନିଜର ଭୁଲତାଗୁଡ଼ିକୁ ଉପରକୁ ଟେକିଦେଲେ । ଏହା ଦେଖିପାରି ପ୍ରତ୍ୟୁତ୍ପନ୍ନମତି ମହିଳାଜଣକ କହିଉଠିଲେ ''ଆପଣମାନେ ଜାଣନ୍ତି ନାହିଁ ପେଟ ଗରମ ଥିଲେ ମଧ୍ୟ ଜ୍ୱର ହୁଏ । ନିଉଲି ମ୍ୟାରେଡ୍‌ର ଆମ ସମାଜର ବିବାହଘରେ ଯେପରି ସବୁ ବ୍ୟବସ୍ଥା, ସେଥିରେ ପେଟ, ଖରାପ ହେବ ହିଁ ହେବ । ମୁଁ ଠିକ୍ ଲକ୍ଷ୍ୟ କରିଛି ତାଙ୍କର ଫ୍ରିକ୍ୱେଣ୍ଟ ବାଥ୍‌ରୁମ୍‌କୁ ଯିବାର'' । କଥାଶୁଣି ସମସ୍ତେ କେବଳ ମୁରୁକି ହସଟିଏ ଲେଖାଏ ଦେଇ ଚୁପ୍ ରହିଲେ ।

ତା'ପରେ ନାନା ହସଖୁସିରେ ସମୟ ବିତିଗଲା । ନବ୍ୟବିବାହିତା ଯୁବତୀ ଜଣକ ଓଡ଼ିଆ କହିଲାବେଳେ 'କ'ର ଉଚ୍ଚାରଣ ଠିକ୍ କରୁଥିଲେ ମଧ୍ୟ, କଥାରେ ତାଙ୍କର ହିନ୍ଦି ଭାଷାର ପ୍ରଭାବ ପୂରି ରହିଥିଲା । ସ୍ୱାମୀଙ୍କ ସହିତ ସେ କେବଳ ହିନ୍ଦି ବା ଇଂରାଜୀରେ କଥା ହେଉଥା'ନ୍ତି । ତାଙ୍କ ସ୍ୱାମୀଜଣଙ୍କ ଓଡ଼ିଆ । ଦିଲ୍ଲୀପ ବୋଲି ସେ ଡାକୁଥାନ୍ତି । କଥାବାର୍ତ୍ତାରୁ ବୁଝିଲି ଭୁବନେଶ୍ୱରରେ ତାଙ୍କ ବାପା, ମା' ରୁହନ୍ତି । ସ୍ତ୍ରୀଙ୍କ ବାପଘର ମଧ୍ୟ ବାଲେଶ୍ୱର । ତଥାପି ଜଗନ୍ନାଥ ଦେଶର ଲୋକ ତ । ସବୁ ଭାଷାରେ ଦଖଲ ଥିବା ଚାହି ।

Digitized by srujanika@gmail.com

ଡିନାର ପରିବେଷଣ ପ୍ରାୟ ସାଢ଼େ ଆଠଟା ବେଳକୁ ହୋଇଗଲା । ସେଠାର ସମସ୍ତେ ପ୍ରାୟ ଭେଜିଟେରିଆନ ମିଲ୍‌ସ ମଗାଇଥିଲେ । ମିକ୍‌ସଡ ଡାଏଟ, ପୁରି ୪ପଟ ଖାଇଦେଇ ପ୍ରାୟ ସମସ୍ତେ ଭାତ ଛାଡ଼ିଦେଲେ । ବେଶ୍ ଚାଉଳିଆ ଥିଲା ଭାତ । ଜଣେ ପରିହାସରେ କହିଲେ "ଆପ୍ ଲୋଗ୍ ଚାୱଲ ଖା ରହେହେଁ, ତବ୍ ଯେ 'ଚାଉଳ' ନେହିଁ ହୋକେ ଔର କ୍ୟା ରୋଟୀ ହୋଗୀ ?" ହସର ଏକ ଲହରୀ ଖେଳିଗଲା ।

ପାଞ୍ଚ ତାରିଖ ପୂର୍ବାହ୍ନ ଦଶଟା ବେଳକୁ ଗାଡ଼ି ଲାଗିଲା "ଇଲାହାବାଦ" ଷ୍ଟେସନରେ । ବ୍ରେକ୍‌ଫାଷ୍ଟ ଆସିଲା ଓ ପରେ ପରେ ଲଞ୍ଚ ପାଇଁ ଅର୍ଡ଼ର ।

ପୂର୍ବୋକ୍ତ ବୟସ୍କା ଭଦ୍ର ମହିଳା ଜଣକ ପଚାରିଲେ "କଣ ଗଲା ରାତିରେ ଯେଉଳି ଚାଉଳିଆ ରାଇସ୍ ଦେଇଥିଲ ସେପରି ଦେବନା ଆଜି କିଛି ବେଟାର ?"

ପ୍ୟାଣ୍ଟ୍ରି ପରିଚାରକ ଜଣକ କହିଲେ 'ନାହିଁ' କାଲି ରାତିର ଖାନା ଖଡ଼ଗପୁରଠାରୁ ଆସିଥିଲା । ଆଜି ଆମର ପ୍ୟାଣ୍ଟ୍ରିକାରରେ ରୋଷେଇ ହେବ ଓ ଫ୍ରାଏଡ଼ ରାଇସ୍ ମିଳିବ ।"

ଯାହାହେଉ ଭଲ ଖାଇବା ଆଶାରେ ସମସ୍ତେ ପୁଣି ଭେଜିଟାରିଏନ ମିଲ୍‌ସର ବରାଦ କଲେ ।

ଦିନ ୨ଟା ବେଳକୁ ଲାଞ୍ଚ୍ ପରିବେଷଣ ହେଲା । ପ୍ୟାକେଟ ଖୋଲି ପାଟିରେ କିଛି ଫ୍ରାଏଡ଼ ରାଇସ୍ ପୁରାଉ ପୁରାଉ ଭଦ୍ରମହିଳା ଜଣକ ଚିତ୍କାର କରିଉଠିଲେ "ହରିବୁଲ ହରିବୁଲ, କଣ ଦେଇଛ ହୋ ? ଏତେ ହାର୍ଡ଼ରାଇସ୍ — ଏ ତ କାଲି ନାଇଟ୍ ଠାରୁ ମଧ ବଳିଯାଇଛି ।"

ପରିଚାରକ ଜଣକ, ବୋଧହୁଏ ତାଙ୍କ ସ୍ୱଭାବ ସୁଲଭ ବେଖାତିରିଆ ଢଙ୍ଗରେ କହିଲେ "ଫ୍ରାଏଡ଼ରାଇସ କ'ଣ ଆଉ ହାଲୁଆ ହୋଇଥାନ୍ତା ?"

ଏକଥା ଶୁଣି ଭଦ୍ରମହିଳାଙ୍କ ମୁଣ୍ଡ ଗରମ ହୋଇଗଲା । 'ହ୍ୱାଟ୍.... ? ଲାଓ କମ୍ପ୍ଲେନ୍ ବୁକ୍ ଅଭି ଲିଖ୍‌ତୀହୁଁ ।

ପରିଚାରକ ହସିଦେଇ ପଳାଇଲା । ତା'ପରେ ଚାଲିଲା ସ୍ୱାଭାବିକ ଭାବରେ ଘଟଣା ଉପରେ ଟିକ୍‌କା ଟିପ୍ପଣୀ । ନବବିବାହିତା ଯୁବତୀ ଜଣକ ବେଶ୍ ଦାନ୍ତ ଚିପି ଚିପି କହିଲେ ।

Digitized by srujanika@gmail.com

"ଟୁ ଇଅର୍ସ୍ ବିଫୋ ମୋର ବଡ଼ ବ୍ରାଦାଇନ୍‌ଲା ଏହି ରେଲୱେର କେଆଟେକ ଥିଲେ । ବେଶ୍ ଭଲ ଚାଲିଥିଲା । କୋଲ୍‌ଡ଼୍ ଡ୍ରିଙ୍କ ଓ ଆଇସକ୍ରିମ୍ ମଧ୍ୟ ପେଣ୍ଟ୍ରିକାରେ ବ୍ୟବସ୍ଥା କରାଇଥିଲେ । ତାଙ୍କ ପ୍ରେଡ଼ିସେସ ପୂରା ଖୋଳ କରିଦେଇଥିଲେ । ମୋର ବ୍ରାଦାଇନ୍‌ଲା ସବ୍ ସାଜାଡ଼ିଦେଲେ । ହେଲେ କ'ଣ ହେବ ଖୁବ୍ କମ୍ ସମୟ ପାଇଁ ସେ ରହିଲେ । ତା ଉପରେ ତାଙ୍କର ଟ୍ରାନ୍‌ସଫ ହେଇଗଲା । ଏଣେନ ଯୈସାକୁ ତୈସା ।"

'ହଁ ଦେଖନ୍ତୁ ନା ମୁଁ କମ୍ପ୍ଲେନ୍ ବୁକ୍‌ଟା ଆଣିବାକୁ କହିଲି ତାହା ମଧ୍ୟ ହେଲା ନାହିଁ । ହ୍ୱାଟ ଟାଇପର ଏଟିଚ୍ୟୁଡ଼୍ ଏମାନଙ୍କର !!' ବୟସ୍କା ଭଦ୍ରମହିଳା ଜଣକ ରାଗ ଗରଗର ହୋଇ କହିଲେ ।

ଏତେ ସମୟ ନୀରବରେ ଏସବୁ ନିଜର କାନ ଓ ଆଖି ଦ୍ୱାରା ଉପଭୋଗ କରୁଥିଲି । ମୁହଁ ଖୋଲି କିଛି କହିବାକୁ ଇଚ୍ଛା ହେଲା । କହିଲି "କିଛି ମନେ କରିବେନି ମାଡାମ୍ । କମ୍ପ୍ଲେନ୍ ବହିରେ ଲେଖି ଆପଣ କ'ଣ ଆଶା କରନ୍ତି ? ଏହାର କିଛି ପ୍ରଭାବ ପଡ଼ିବ ?" "କାହିଁକି ପଡ଼ିବ ନାହିଁ ? ଅତୀତରେ ମି. ସିନ୍ଧିଆ ଯେତେବେଳେ ରେଲ୍ ମିନିଷ୍ଟାର ସେତେବେଳେ ସବୁ କମ୍ପ୍ଲେନ୍ ଉପରେ ସଡ଼ନ୍ ଏକ୍‌ସେନ ହେଉଥିଲା" ଭଦ୍ର ମହିଳା ସେହିପରି ଉଚ୍ଚସ୍ୱରରେ କହିଲେ ।

ସାମାନ୍ୟ ହସି କହିଲି : "ନା, ନା, ଏବେ ମଧ୍ୟ କାର୍ଯ୍ୟକାରୀ ହେବ । ଫାଇଲ ଠିକ୍ ମୁଭ୍ କରିବ । ଆଉ ସେଥିରେ କ'ଣ ନୋଟ୍ ଦିଆଯିବ ଜାଣନ୍ତି ?"

ସମସ୍ତେ ସେମାନଙ୍କର ଜିଜ୍ଞାସୁ ଚକ୍ଷୁଗୁଡ଼ିକର ଦୃଷ୍ଟିକୁ ମୋ ଉପରେ ଉଦ୍‌ଗ୍ରୀବ ଭାବରେ ନିକ୍ଷେପ କଲେ ।

ଏହା ଦେଖି ମୁଁ ମଧ୍ୟ ଖୁବ୍ ଗମ୍ଭୀର ଭାବରେ ଆରମ୍ଭ କଲି ।

"ନୋଟ୍ ଦିଆଯିବ, ପ୍ରତ୍ୟେକ ମଣିଷର ରୁଚି ଭିନ୍ନ ଭିନ୍ନ । ତେଣୁ ପ୍ରତି ଯାତ୍ରୀଙ୍କୁ ରୁଚିଲା ଭଳି ତାଙ୍କ ଇଚ୍ଛା ମୁତାବକ ଖାଦ୍ୟପାଚନ କରି ପରିବେଷଣ କରିବା ଯେ କୌଣସି ଲୋକ ପକ୍ଷରେ ଏକ ଅସମ୍ଭବ ବ୍ୟାପାର । ସମସ୍ତଙ୍କୁ ଖୁସି କରିବା ସମ୍ଭବ ନୁହେଁ । ସୁତରାଂ ଏହି ଅଭିଯୋଗକୁ ନଥିଭୁକ୍ତ କରି ରଖି ଦିଆଯାଉ । ଅନୁମୋଦନ ସକାଶେ । ଏବଂ ତାହା ଓକେ ହୋଇ ଫେରିବ । କେତେ କମ୍ପ୍ଲେନ୍ ଆପଣ କରିବେ ? ଆଉ ତାକୁ ପ୍ରମାଣ କରିବାର ମଧ୍ୟ ସ୍କୋପ୍ କାହିଁ ଆପଣଙ୍କର ? ଏଇ ଦେଖୁ ନାହାଁନ୍ତି ଏଇ ସୁପରଫାଷ୍ଟ ଟ୍ରେନ୍ କଥା । ଠିକ୍ ଟାଇମ୍‌ରେ ଭୁବନେଶ୍ୱର ଛାଡ଼ି, ବିନା କୌଣସି କାରଣରେ ତିନିଘଣ୍ଟା ବିଳମ୍ବରେ ଚାଲିଛି ।"

Digitized by srujanika@gmail.com

ଉପର ବର୍ଥରୁ ଏ ଖଟୀକୁ ମୌନରେ ଉପଭୋଗ କରୁଥିବା ଅନ୍ୟଜଣେ ସହଯାତ୍ରୀ ବୋଧହୁଏ ଆଉ ଧୈର୍ଯ୍ୟଧରି ପାରିଲେ ନାହିଁ । ସଙ୍ଗେ ସଙ୍ଗେ କଥାମଝିରେ କଥା କହିବାକୁ ଓହ୍ଲେଇ ଆସିଲେ ।

"ଡାକ୍ତର୍ ସାହେବ ଯାହା କହିଲେ ସମ୍ପୂର୍ଣ୍ଣ ଠିକ୍ କଥା କହିଛନ୍ତି । ପ୍ରମାଣ ନ ଥିଲେ କାର୍ଯ୍ୟାନୁଷ୍ଠାନ ପୁଣି କ'ଣ ? ଆମ୍ଭମାନଙ୍କ ମଧ୍ୟରୁ ହୁଏତ କେହି କେହି ପାଣ୍ଟ୍ରିକାର ମ୍ୟାନେଜରଙ୍କ ଅନୁରୋଧକ୍ରମେ ଏ ମଧ୍ୟରେ ସାର୍ଟିଫିକେଟ ଦେଇ ସାରିଥିବେ—'ପରିବେଷିତ ଖାଦ୍ୟ ଅତ୍ୟନ୍ତ ରୁଚିକର ଓ ସୁସ୍ୱାଦୁ । ରେଳ କର୍ତ୍ତୃପକ୍ଷ ଏପରି ବ୍ୟବସ୍ଥା କରିଥିବାରୁ ଧନ୍ୟବାଦାର୍ହ । ତେଣୁ ଆପଣ କ'ଣ କରିବେ ମ୍ୟାଡାମ୍ ? ଏହା ସରକାରୀ କଳ । ଏଥିରେ ନୈସର୍ଗିକ ନ୍ୟାୟ ଛଡ଼ା ଅନ୍ୟ କିଛି ମିଳେନା । ତେଣୁ ପ୍ରମାଣ କରି ନ ପାରିଲେ କାର୍ଯ୍ୟାନୁଷ୍ଠାନ ଆପେ ଆପେ ନାଲିଫିତାର ଅନ୍ତରାଳରେ ହିଁ ରହିଯିବ ।"

ମୋ ମୁହଁରୁ ପୁଣି ବାହାରି ପଡ଼ିଲା "ହଁ ଏହା ସରକାରୀ କଳ । ଖଜୁରୀ ଗଛର କିଗୁଣ ଗାଇବେ ..."

ଭଦ୍ର ମହିଳା ଜଣକ ପାଦ ପୂରଣ କରିଦେଲେ, "ମୂଳରୁ ପାହାଚ ପାହାଚ ।"

* 'ଗୋକର୍ଣ୍ଣିକା' ଜୁଲାଇ – ୧୯୯୪

Digitized by srujanika@gmail.com

# ଡାକ୍ତର ପୁଣି ସମୟ

ରାତି ପ୍ରାୟ ବାରଟା ସରିକି ହେବ । ଡାକ୍ତର ଟିଙ୍ଗାରାମଙ୍କ କଲିଂବେଲ୍ ଚିତ୍କାର କଲା । ଡାକ୍ତରବାବୁ ମୁହଁରେ ବିରକ୍ତିଭାବସହ ଶଯ୍ୟାତ୍ୟାଗ କରି କବାଟ ଖୋଲିଲେ । ହୁଏତ କେହି ଡେଲିଭରି କେଶ୍ ନେଇ ଆସିଥାଇ ପାରନ୍ତି ।

ଡାକ୍ତର ଟିଙ୍ଗାରାମଙ୍କ କ୍ଲିନିକ୍ ବଡ଼ଜୋରଁ ଘୋଷାରି ଘୋଷାରି ରାତି ସାଢ଼େ ଆଠଟା ପର୍ଯ୍ୟନ୍ତ ଚାଲେ, ଯଦିଓ ତାଙ୍କର ସମୟ ନିର୍ଘଣ୍ଟ ହେଉଛି ସନ୍ଧ୍ୟା ପାଞ୍ଚରୁ ସାଢ଼େ ସାତ । ଏହାପରେ ଡାକ୍ତର ରାମଧନ ଦାସଙ୍କର ମୁଡ୍ ଅଫ୍ ହୋଇଯାଏ । ଯଦି କେହି ସାଢ଼େ ସାତଟା ପରେ ଆସନ୍ତି ସେ ଡାକ୍ତରବାବୁଙ୍କ ପାଖରୁ ଭଲକରି ଦୁଇପଦ ଶୁଣିବା ପାଇଁ ପ୍ରସ୍ତୁତ ହୋଇ ଆସିଥିବେ । ଯଦି ପ୍ରଥମ ମାଡ଼ଟା ସମ୍ଭାଳିଗଲେ, ଡାକ୍ତରବାବୁ ତେଣିକି ଭଲରେ ଭଲରେ ତାଙ୍କୁ ବିଦାୟ କରିଦିଅନ୍ତି ଓ ସେ ହସ ହସ ମୁହଁରେ ବାହାରିଯା'ନ୍ତି । ଏଭଳି ପାଲା ରାତି ସାଢ଼େ ଆଠଟା ପାଖାପାଖି ଚାଲେ । ଏହି ଚିଡ଼ା ସ୍ୱଭାବ ପାଇଁ ସେ ପ୍ରଥମେ ରୋଗୀମାନଙ୍କ ମହଲରେ ଓ ପରେ ପରେ ସାରା ରାଜ୍ୟରେ ଡାକ୍ତର ଟିଙ୍ଗାରାମ ନାମରେ ସୁପରିଚିତ ହୋଇଗଲେଣି ।

ସାଢ଼େ ଆଠରେ ଚୌକି ଛାଡ଼ି ଡାକ୍ତରବାବୁ ସିଧାସଳଖ ଭୋଜନରେ ବସନ୍ତି ଟି.ଭି. ସେଟ୍‌ଟିକୁ ମୁହଁକରି । ଆଠଟା ଚାଳିଶ ହିନ୍ଦୀ ସମ୍ବାଦ ଓ ପରେ ପରେ ସିରିଏଲ୍‌ଟି ଶେଷକରି ହାତମୁହଁ ଧୋଇ ଶଯ୍ୟା ଧରନ୍ତି । କେହି ଆଉ ତାଙ୍କୁ ଡିଷ୍ଟାର୍ବ କରନ୍ତି ନାହିଁ । କୁଆଡ଼େ ଥରେ ତାଙ୍କର ନିଦ ଭାଙ୍ଗିଗଲେ ରାତିସାରା ଆଉ ସେ ଶୋଇପାରନ୍ତି ନାହିଁ । ତେଣୁ ରାତିରେ ଯଦି କେହି ଆସନ୍ତି, ଘରଣୀ ତାଙ୍କର ବେଶ୍ କିଛି ଜେରା କଲାପରେ, ଯଦି ସେପରି କିଛି ଆପଦାବସ୍ଥା ଥିବାର ଅନୁଭବ କରନ୍ତି ତାହାହେଲେ କେବଳ ସେ ହିଁ ଡାକ୍ତରବାବୁଙ୍କୁ ଉଠାନ୍ତି । ତେବେ ଡେଲିଭରି କେଶ୍ ହୋଇଥିଲେ ଘରଣୀଙ୍କୁ ବେଶୀ କିଛି କସରତ କରିବା ଦରକାର ପଡ଼େନାହିଁ । ଆଜି ଘରଣୀ ନାହାନ୍ତି, ଭାଇ ଘରକୁ ଟୁର୍ ପକାଇଛନ୍ତି । ଅଗତ୍ୟା ନିଜକୁ ଉଠିବାକୁ ପଡ଼ିଲା ।

କେବଳ ରାତିରେ ଶୋଇବା ବ୍ୟାପାରରେ ଯେ ଡାକ୍ତର ଟିଙ୍ଗାରାମ ଏତେ ସମୟାନୁବର୍ତ୍ତିତା ଅବଲମ୍ବନ କରନ୍ତି ତାହା ନୁହେଁ, ତାଙ୍କର ସମସ୍ତ କାର୍ଯ୍ୟରେ

Digitized by srujanika@gmail.com

ନିର୍ଦ୍ଦିଷ୍ଟ କେତେକ ନିୟମକୁ ସେ ଯଥାଯଥ ଭାବରେ ପାଳନ କରିଥା'ନ୍ତି । ଏ ଉତ୍କଟ ନିୟମାନୁବର୍ତ୍ତିତା ତାଙ୍କୁ ଯେ କେବଳ ନିଜ ବ୍ୟକ୍ତିଗତ ଜୀବନରେ ଏ ଉପାଧିରେ ଭୂଷିତ କରାଇଛି, ଏକଥା ନୁହେଁ । ତାଙ୍କ ଦପ୍ତରୀ ଭୂମିକାରେ ମଧ୍ୟ ମୁହଁରେ ନ କହିଲେ ବି ପଛରେ ଏହି ପଦବୀରେ ଟାହୁଲି ଟାପରା କରନ୍ତି ତାଙ୍କ ଅଧଃସ୍ତନମାନେ । ଯେ ଦପ୍ତରରେ କାମ କରନ୍ତି ସେ ଦପ୍ତରୀ, ଏହି ଅର୍ଥରେ ପାଠକେ ବୁଝିବାକୁ ଚେଷ୍ଟା କରିବେ, କୌଣସି ଚତୁର୍ଥ ଶ୍ରେଣୀୟ କର୍ମଚାରୀ ଭାବରେ ଚିନ୍ତା କରିବେ ନାହିଁ । କାରଣ ଡାକ୍ତର ଟିଙ୍ଗାରାମ ସହରର ଏକ ବିଶିଷ୍ଟ ଚିକିତ୍ସାଳୟର ଅଧୀକ୍ଷକ ମଧ୍ୟ ।

ସେ ଯାହାହେଉ, ଡାକ୍ତର ଟିଙ୍ଗାରାମ ବିରକ୍ତିମିଶା ମୁହଁରେ କବାଟ ଖୋଲି ଦେଖନ୍ତି ସାମନାରେ ପୀରବାବୁ ଉପସ୍ଥିତ । ପୀରବାବୁଙ୍କ ପୂରା ନାଁ ହେଉଛି ପ୍ରିୟରଞ୍ଜନ ମିଶ୍ର । ପୀରବାବୁଙ୍କର ଡାକ୍ତରବାବୁଙ୍କ ସହ ଦୀର୍ଘ କୋଡ଼ିଏ ବର୍ଷର ସମ୍ପର୍କ ରୋଗୀ ଡାକ୍ତର ଭାବରେ । ଏ ଦୀର୍ଘଦିନର ସମ୍ପର୍କ ହେତୁ ପୀରବାବୁ ମନେକରନ୍ତି, ସେ ହେଉଛନ୍ତି ଡାକ୍ତରବାବୁଙ୍କ ଅତ୍ୟନ୍ତ ନିକଟତମ ଲୋକ; ତେଣୁ ଅବେଳରେ ଡାକ୍ତରବାବୁଙ୍କୁ ହଇରାଣ କରିବାକୁ ତାଙ୍କର ଯଥେଷ୍ଟ ଅଧିକାର ରହିଛି । ପୀରବାବୁଙ୍କର ଚରିତ୍ର ଯାହା, ସେଥିରେ ତାଙ୍କ ସାଙ୍ଗସାଥୀମାନେ କହନ୍ତି ଯେ ପୀରର ମୁହଁରେ ଟିକେ ବି ଅଠା ନାହିଁ । ଯାହା କହିଲେ ମଧ୍ୟ ପୀର ହସୁଥିବ ଓ କଥା କହିଚାଲିଥିବ । ଅବଶ୍ୟ ଡାକ୍ତର ଟିଙ୍ଗାରାମ ତାଙ୍କ ଜୀବନରେ ଏପରି ଅନେକ ପୀରଙ୍କ ସମ୍ପର୍କରେ ଆସିଛନ୍ତି ।

ଡାକ୍ତରବାବୁ ପଚାରିଲେ – କ'ଣ ପୀର ଏ ଅବେଳରେ କାହିଁକି ? ଛ'ମାସ ପରେ ପୁଣି ପତ୍ନୀଙ୍କର ପ୍ରସବ ଯନ୍ତ୍ରଣା ଆରମ୍ଭ ହୋଇଗଲା ?

ସାର୍ ! ଆପଣ ତ ଏମିତି କହିବେ, ଛୁଆଟାକୁ ପରା ମାତ୍ର ଛ'ମାସ ପୂରି ସାତମାସ ଚାଲିଲା – ପୀର କହିଲା ।

ତାହା ତ ମୁଁ ଜାଣେ । ଇଚ୍ଛାକୃତ ଗର୍ଭପାତ କଥା ବି ନୁହେଁ ହେଇପାରେ ? ନଚେତ୍ ଏପରି କ'ଣ ଆପଦକାଳ ପଡ଼ିଲା ଯେ ପୀରବାବୁଙ୍କ ଭଳି ଜଣେ ସୁଧିଲୋକ ରାତି ବାରଟାରେ ମୋତେ ଡିଷ୍ଟର୍ବ କରିବାକୁ ଚାଲି ଆସିଲେ – ଡାକ୍ତର ଟିଙ୍ଗାରାମଙ୍କ ଟିଙ୍ଗାମୀ ଆରମ୍ଭ ହେବାକୁ ଲାଗିଲା ।

ନାହିଁ ସାର୍, ଛୁଆଟାକୁ ସାଂଘାତିକ ଜ୍ୱର – ପୀରବାବୁଙ୍କ ସ୍ୱରରେ କାତରତାର ଛାପ ।

Digitized by srujanika@gmail.com

ଜ୍ୱର କେତେ ଅଛି ?

ପ୍ରାୟ ଶହେଖଣ୍ଡେ ଥିବ ସାର୍—ଡାକ୍ତରଙ୍କ ପ୍ରଶ୍ନର ଉତ୍ତର ଦେଲେ ପୀର ।

ଶହେ ଜ୍ୱର ପୁଣି ସାଂଘାତିକ ? ତୁମେ କ'ଣ କହୁଛ ପୀର ? ଡାକ୍ତରଙ୍କ ସ୍ୱର ମଧ୍ୟମରୁ ପଞ୍ଚମ ଆଡ଼କୁ ଉଠୁଛି ।

ହଁ ସାର୍—ସକାଳ ଦଶଟାରେ ଅଫିସ ଆସିଲାବେଳକୁ ଦେଖି ଆସିଥିଲି ସାର୍—ଓଠ ଦୁଇଟିକୁ ସମ୍ପ୍ରସାରିତ କରି ତାମ୍ବୁଳ ରଞ୍ଜିତ ଦଂତପଂକ୍ତିକୁ ଦେଖାଇ କହିଲେ ପୀର ।

ଡାକ୍ତରଙ୍କ ସ୍ୱର ସେହି ପଞ୍ଚମରେ । ଧୈବତଆଡ଼କୁ ନ ଆଗେଇ କହିଲେ—ଅଫିସ ଆସିଲାବେଳକୁ ଶହେ ଜ୍ୱର ଥିଲା । ଆଉ ଖବର ରଖିନାହଁ ? ବର୍ତ୍ତମାନ କେତେଟା ବାଜିଲାଣି ?

ସାଢ଼େ ବାରଟା ହେବ ସାର୍, ଘଡ଼ିକୁ ନ ଚାହିଁ ଫଟ୍‌କରି ପୀରବାବୁ କହିପକାଇଲେ ।

ଅଫିସ୍ ସରିଲାଣି ଅପରାହ୍ନ ପାଞ୍ଚରୁ । ପୁଅକୁ ଜ୍ୱର ଥିଲା ଦିନ ଦଶଟାରେ ଶହେଡିଗ୍ରୀ । ଆଉ ବାପା ଆସିଛନ୍ତି ରାତି ସାଢ଼େବା'ଉରେ ଡାକ୍ତରଙ୍କୁ ଉଠାଇ ପୁଅପାଇଁ ଔଷଧ ନେଇ ପୁଅର ମା'ଙ୍କୁ ଖୁସି କରାଇବାକୁ ନା ? ତୁମ ପୁଅ ଜ୍ୱରର ଗତି ଘଣ୍ଟାକୁ କେତେ ଡିଗ୍ରୀ ଯେ ପୁଅର ଅବସ୍ଥା ବର୍ତ୍ତମାନ ସାଂଘାତିକ ? ଡାକ୍ତର ଟିଙ୍ଗାରାମ ରାଗିଲେ ଏହିଭଳି ଛିଗୁଲେଇ କଥା କୁହନ୍ତି ।

ନାଇଁ ସାର୍, ଏସେମ୍ବ୍ଲି ଚାଲିଛି ତ, ରାତି ଆଠଟା ପର୍ଯ୍ୟନ୍ତ ସେକ୍ରେଟାରୀଙ୍କ ପାଖରେ ରହିଗଲି । ଏସେମ୍ବ୍ଲି କୋଶ୍ଚନ ପାଇଁ ରାତିରେ ମିନିଷ୍ଟରଙ୍କ ସହିତ ତାଙ୍କର ଡିସ୍‌କସନ୍ ହେବାର ଥିଲା—କାଲି ଏସେମ୍ବ୍ଲି ଫ୍ଲୋରରେ ଉତ୍ତର ଦେବାକୁ ହେବ ତ ।

ତେବେ ରାତି ଆଠଟା ପରେ ଏଯାବତ୍ ?

ଡାହାଣ କାନ ଉପର ଚୂଳ ଭିତରେ ଅକସ୍ମାତ ଉକୁଣୀ ଚାଲିଗଲା ଭଳି ମନେହେଲା ପୀରଙ୍କର । ସେଇ ହାତରେ ଚୂଳମୂଳ ସାଉଁକୁ ସାଉଁକୁ ପୀରବାବୁ ଅଲାଜୁକିଆ ହସଟାଏ ହସି କହିଲେ, ଟିକେ ସେକେଣ୍ଡ ସୋ ଚାଲିଯାଇଥିଲି ସାର୍ । ବଡ଼ ବୋର୍ ହୋଇଯାଉଛୁ ସାର୍ ଏସେମ୍ବ୍ଲି ସେସନ୍‌ରେ । ଖଣ୍ଡେ ଉପୁରି ଟିକେଟ୍ ମିଳିଗଲା ଗୋଟେ ଟ୍ରାନ୍‌ସଫର କେଶଟା ଉପରେ । ସାମାନ୍ୟ ରିଲାକ୍ସ କରିବାକୁ ଚାଲିଯାଇଥିଲି ସାର୍ ।

Digitized by srujanika@gmail.com

ଡାକ୍ତର ଟିଙ୍ଗାରାମଙ୍କ କ୍ରୋଧ ହଠାତ୍ ପଞ୍ଚମରୁ ଧୈବତକୁ ଟପି ନିଷାଦ ଆଡ଼କୁ ଚଢ଼ିଗଲା — କହିଲେ, ତୁମ କଥା ଅନୁସାରେ ପୁଅକୁ ସାଂଘାତିକ ଜ୍ୱର, ତଥାପି ସେକେଣ୍ଡ ସୋ ସିନେମା ଚାଲିଗଲ ? ଆଉ ସମୟ ନ ଥିଲା, ରାତି ସାଢ଼େ ବାରରେ ଆସିଲ ଡାକ୍ତରଙ୍କୁ ଡିଷ୍ଟାର୍ବ କରିବାକୁ ? ଯାଅ ମୋର ଏ'ଟା ସମୟ ନୁହେଁ ତୁମକୁ ଔଷଧ ଦେବାପାଇଁ ।

ପୀରବାବୁଙ୍କ ସଦା ହରଷ ମୁହଁ ଉପରେ ଟିଙ୍ଗା ଡାକ୍ତରଙ୍କ କଟୂକ୍ତି ସତେଯେପରି ଗୁଡ଼ାଏ ଅବିର ଫୋପାଡ଼ି ଦେଲା । ତଥାପି ସ୍ୱଭାବସୁଲଭ ହସଭରା ଉକ୍ତିରେ ପୀରବାବୁ କହିଲେ —

ସାର୍ ! — ଡାକ୍ତର ପୁଣି ସମୟ ?

ନିଆଁରେ ପାଣି ପଡ଼ିଲା ଭଳି ଡାକ୍ତରଙ୍କ ରାଗ ଧପ୍‌କରି କମିଗଲା । ଗୋଟାଏ ଫିଜିସିଆନ୍ ସାମ୍ପଲ୍ ବାହାର କରି ପୀରବାବୁଙ୍କ ହାତ ଉପରକୁ ଫୋପାଡ଼ିଦେଇ, ପ୍ରତି ଦୁଇଘଣ୍ଟାରେ ଚାମୁଚିଏ କରି ଖାଇବାକୁ ଦେବାକୁ କହି, ମୁହଁ ଉପରେ କବାଟକୁ ଧଡ଼କରି ବନ୍ଦ କରିଦେଲେ ଡାକ୍ତର ଟିଙ୍ଗାରାମ ।

*     *     *     *     *     *

ଡାକ୍ତର ହିସାବରେ ରାମଧନବାବୁଙ୍କର ବହୁ ସୁନାମ । ଲୋକେ କହନ୍ତି, ଟିଙ୍ଗାହେଲେ କ'ଣ ହେଲା, ଭଗବାନ ହାତଟାଏ ଦେଇଛନ୍ତି । ସେ ହାତର ପ୍ରେସକ୍ରିପ୍‌ସନ୍ ତ ଯାହା, ସେଥିରେ ପୁଣି ଯଦି ତାଙ୍କ ହାତରୁ ଔଷଧଟା ମିଳିଗଲା ତାହାହେଲେ ତ କଥା ନାହିଁ । ରୋଗୀର ମହାଭାଗ୍ୟ । ମଲା ମଣିଷ ଶ୍ମଶାନରୁ ବି ଉଠିଆସିବ ।

ପ୍ରଚାରଧର୍ମୀ ଯୁଗରେ ଡାକ୍ତର ଟିଙ୍ଗାରାମଙ୍କ ସୁନାମରେ, ରାଜ୍ୟ ସଚିବାଳୟର ମୁଖ୍ୟ ଶାସନ ସଚିବଙ୍କଠାରୁ ଆରମ୍ଭ କରି ବିଭାଗୀୟ ସଚିବ ତଥା ଅନ୍ୟାନ୍ୟ ପ୍ରଶାସକମାନଙ୍କର ମଧ୍ୟ ଟିଙ୍ଗାରାମଙ୍କ କ୍ଲିନିକ୍‌ରେ ମଝିରେ ମଝିରେ ପାଦ ପଡ଼େ; ଅବଶ୍ୟ କେତେକ ବିଶେଷ ଗରିମାଯୁକ୍ତ ପ୍ରଶାସକଙ୍କ କଥା ନିଆରା । ଟିଙ୍ଗାରାମଙ୍କ ସମୟ ସୁବିଧାର ଉପଯୋଗ ସେମାନେ କରନ୍ତି, ନିଜ କୋଠୀକୁ ଡାକି ।

ଡାକ୍ତର ଟିଙ୍ଗାରାମଙ୍କ କ୍ଲିନିକ୍‌ରେ କେବଳ ଯେ ସ୍ଥାନୀୟ ରୋଗୀଙ୍କର ଭିଡ଼, ସେକଥା ନୁହେଁ, ଦୂରଦୂରାନ୍ତରୁ ମଧ୍ୟ ଅନେକ ରୋଗୀ ବହୁ ଆଶାରେ ଆସି ଅପେକ୍ଷା କରନ୍ତି ଦିନପରେ ଦିନ । କାରଣ ଟିଙ୍ଗାରାମଙ୍କ ସମୟାନୁବର୍ତ୍ତିତା ଓ ୱାର୍କ ଟୁ ଟାଇମ୍ ନୀତିରେ ଲୋକେ ଡାକ୍ତରବାବୁଙ୍କୁ ଅଧିକ ବିରକ୍ତ ନ କରାଇବାକୁ

Digitized by srujanika@gmail.com

ଉଚିତ ମନେକରନ୍ତି । ତେବେ ଦୂରଦୂରାନ୍ତ ରୋଗୀମାନଙ୍କ ପାଇଁ ଡାକ୍ତରବାବୁଙ୍କ ଦରଦ ମଧ୍ୟ କମ୍ ନୁହେଁ । ପ୍ରତ୍ୟେକ ରବିବାର ଦିନ ୧୦ ରୁ ୫ ଅବିରତ ଭାବରେ ରୋଗୀ ଦେଖିଥାନ୍ତି ସେ । ସେଦିନ ସ୍ଥାନୀୟ ରୋଗୀଙ୍କ ପ୍ରବେଶ ନିଷେଧ । ରବିବାରର ଖଟଣି ପାଇଁ ଡାକ୍ତର ଟିଙ୍ଗାରାମ ଶନିବାର ଦିନଟିକୁ ସାପ୍ତାହିକ ଛୁଟୀ ଦିନ ଭାବରେ ଘୋଷଣା କରିଛନ୍ତି ନିଜକୁ ରିଲାକ୍ସ କରିବା ପାଇଁ । ପୂର୍ବୋକ୍ତ ବିଶେଷ ଗରିମାଯୁକ୍ତ ପ୍ରଶାସକମାନେ ଟିଙ୍ଗାରାମଙ୍କର ଏହି ଶନିବାର ଛୁଟି ଦିନର ସୁଯୋଗ ନିଅନ୍ତି । ଡାକ୍ତର ରାମଧନ ଯେତେ ଟିଙ୍ଗା ହୁଅନ୍ତୁନା କାହିଁକି ଏସବୁ କ୍ଷେତ୍ରରେ ତାଙ୍କର ବ୍ୟାଟେରି ଡାଉନ୍ । ଯେତେହେଲେ ସରକାରୀ ଚାକିରି, ସର୍ବଭାରତୀୟ ସେବାରେ ଥିବା ଲୋକଙ୍କର ସାମର୍ଥ୍ୟ ଆଗରେ ରାଜ୍ୟ ସ୍ୱାସ୍ଥ୍ୟସେବାର ଏକ ଅକିଞ୍ଚନ ସେବକର ବା କି ଟାଣ ? ପୀରବାବୁଙ୍କର ସେ ଉକ୍ତି ତାଙ୍କୁ ସାନ୍ତ୍ୱନା ଦିଏ—"ଡାକ୍ତର ପୁଣି ସମୟ ?"

ପ୍ରଶାସକମାନଙ୍କ ଘରକୁ ଡାକ୍ତର ଟିଙ୍ଗାରାମଙ୍କୁ ଡାକରା ଆସିଲେ ମଧ୍ୟ ଡାକ୍ତରବାବୁ ବେଶ୍ ଜଗିରଖି କଥାବାର୍ତ୍ତା କରନ୍ତି । ନିଜର ବ୍ୟକ୍ତିଗତ ନ୍ୟାଯ୍ୟ ଗ୍ରିଭାନ୍ସ ଥିଲେ ମଧ୍ୟ ନିଜକୁ ବହୁତ ସଂଯତ କରି ରହନ୍ତି ସେ । କାରଣ ସର୍ବଭାରତୀୟ ସେବକ ଭାବରେ ମାର୍କାମରା ସେବକମାନଙ୍କର ରାଜ୍ୟ ମଧ୍ୟରେ ସୀମାବଦ୍ଧ ଏକ ସାମାନ୍ୟ ସେବକର ସ୍ୱାର୍ଥପୂର୍ଣ୍ଣ ଅଭିଯୋଗ ହୁଏତ ତାଙ୍କପ୍ରତି ପ୍ରଶାସକଙ୍କର ବିରାଗର କାରଣ ହୋଇପାରେ !!

ସ୍ୱାସ୍ଥ୍ୟ ସଚିବଙ୍କ ଘରେ ରୋଗ ସମ୍ପର୍କରେ ଚର୍ଚ୍ଚା ହେଉ ହେଉ, ଶାସନ ସମ୍ପର୍କରେ ଅନେକ ଅନେକ ଆଲୋଚନା ସଚିବ ମହୋଦୟ ଆରମ୍ଭ କରିଥାନ୍ତି, ତାଙ୍କ ବିଚାରବୁଦ୍ଧିର ତାରିଫ ଶ୍ରୋତୃମଣ୍ଡଳିଙ୍କ ପାଖରୁ ଶୁଣିବାକୁ, ଯଦିଓ ମଝିରେ ମଝିରେ ସଚିବ ମହୋଦୟ ସୂଚାଇ ଦେଉଥାନ୍ତି ଯେ—"ଅଫିସ୍, ଅଫିସ୍ । ଅଫିସ୍‌ର କୌଣସି ପ୍ରୋବ୍‌ଲେମ୍ ସେ ଘରକୁ ଆଣନ୍ତି ନାହିଁ । ରାଜ୍ୟପାଇଁ ତାଙ୍କର ଅନେକ କର୍ତ୍ତବ୍ୟବ୍ୟସନ ଅଛି । ସକାଳ ନଅଟା ତିରିଶରୁ ରାତି ସାଢ଼େ ସାତ, ଆଠ ପର୍ଯ୍ୟନ୍ତ ସେ ଅବିରାମ ପରିଶ୍ରମ କରନ୍ତି । ତାଙ୍କ ନିକଟରେ ସମୟ କାହିଁ ?" ତେଣୁ ସେ ଘରେ କେବଳ ରିଲାକ୍ସ କରନ୍ତି ଓ ରାମଧନବାବୁଙ୍କ ଭଳି ବନ୍ଧୁଙ୍କ ସହିତ ମିଷ୍ଟାଳାପ କରନ୍ତି । ଆଉ ଛୁଟିଦିନମାନଙ୍କରେ ହଲିଡେଇଁ କରିବାକୁ ରାଜ୍ୟର ବିଭିନ୍ନ ପିକ୍‌ନିକ୍ ସ୍ପଟ୍‌କୁ କୌଣସି ସର୍କାରୀ ଗାଡ଼ିର ସଦୁପଯୋଗ କରନ୍ତି ।

ରାମଧନଙ୍କର ଅବିଶ୍ୱାସ କରିବାର କିଛି ନାହିଁ । ନିଜ ଡାକ୍ତରଖାନାର କୌଣସି ଉନ୍ନତିମୂଳକ କାର୍ଯ୍ୟପାଇଁ ସେ କେତେଥର ସଚିବ ମହାଶୟଙ୍କୁ ଦପ୍ତରରେ

Digitized by srujanika@gmail.com

ଦେଖାକରିବାକୁ ଚେଷ୍ଟା କରିଛନ୍ତି କିନ୍ତୁ ସାକ୍ଷାତ ହୋଇପାରି ନାହିଁ । ମିଟିଂ ପରେ ମିଟିଂ । ଥରେ ରାମଧନ ସୁଯୋଗ ଉଣ୍ଡି ଦଶଟା ପୂର୍ବରୁ ସଚିବଙ୍କ ଦପ୍ତରରେ ପହଞ୍ଚିଲେ । ସଚିବ ମହାଶୟ ତାଙ୍କ ଅଭ୍ୟାସାନୁସାରେ ନଅଟା ତିରିଶରୁ ହାଜର । ଡାକ୍ତର ଟିଙ୍ଗାରାମ, ସାହେବଙ୍କ ଘରକୁ ଯାଆନ୍ତି ବୋଲି ସଚିବଙ୍କ ନିଜସ୍ୱ ଦପ୍ତରୀ ଶ୍ରୀ ଦାମୋଦର ମହାନ୍ତି ଜାଣନ୍ତି । ତେଣୁ ଡାକ୍ତରଙ୍କ ଆବିର୍ଭାବ ବିଷୟରେ ତତ୍‌କ୍ଷଣାତ ଦାମ, ସାହେବଙ୍କୁ ଜଣାଇବାକୁ ଖାସ ଚାମ୍ବରକୁ ପଶିଲେ । କିନ୍ତୁ ପରକ୍ଷଣରେ ମୁହଁ ଆମ୍ବିଳା କରି ବାହାରି ଆସିଲେ ।

ଡାକ୍ତରବାବୁଙ୍କ ଜିଜ୍ଞାସୁ ଚକ୍ଷୁର ଉତ୍ତରରେ ଦାମ କହିଲେ—''ନାହିଁ ସାର୍, ଆପଣଙ୍କ କଥା କହିବାରୁ ସାହେବ ଟିକେ ଘଣ୍ଟାଆଡ଼କୁ ଅନେଇଲେ ଓ ତା'ପରେ ନୀରବ ରହିଲେ, କିଛି କହିଲେ ନାହିଁ ।''

ଦାମ୍‌ର କଥା ସରିଛି କି ନାହିଁ ସାହେବଙ୍କ ଡାକରା ଘଣ୍ଟି ବାଜିଲା । ଦାମ ଭିତରକୁ ଯାଇ ସଙ୍ଗେ ସଙ୍ଗେ ଫେରି ଆସି ଡାକ୍ତରବାବୁଙ୍କୁ ଭିତରକୁ ଯିବାପାଇଁ ଇଙ୍ଗିତ ଦେଲେ ।

ଡାକ୍ତର ରାମଧନ ନିଜକୁ ଧନ୍ୟ ମନେ କଲେ । ସାହେବଙ୍କ ସହିତ ତାଙ୍କର ଘରୋଇ ସମ୍ପର୍କ ହେତୁ ସେ ଆଜି ଏକ ବିରାଟ ସମସ୍ୟାର ସମାଧାନ କରିପାରିବେ । ତିନିମାସ ହେବ ଟ୍ରେସ୍ ନ ହେଉଥିବା ଫାଇଲଟାକୁ ସେ ଠାବ କରିପାରିବେ । ଚିକିତ୍ସାଳୟର ଉନ୍ନୟନ କାର୍ଯ୍ୟ ପୂରାଦମ୍‌ରେ ଆଗେଇ ଚାଲିବ ଓ ତାଙ୍କରି ରହଣି ଭିତରେ ଏସବୁ ହୋଇପାରିଲେ ଏହି ଚିକିତ୍ସାଳୟର ଇତିହାସରେ ତାଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଏହିପରି ମୁଙ୍ଗେରୀ କଳ୍ପନା ମଧ୍ୟରେ ଡାକ୍ତର ରାମଧନ ପଶିଲେ ସାହେବଙ୍କ କାମେରା ଭିତରକୁ । ମାତ୍ର ରାମଧନଙ୍କ ହଲକ ଶୁଖିଗଲା ସାହେବଙ୍କ ମୁହଁକୁ ଚାହିଁ । ସେଠାରେ ସାହେବଙ୍କ ଚିରାଚରିତ ହସର ଲେଶମାତ୍ର ଚିହ୍ନ ନାହିଁ । ବିଭାଗୀୟ ମୁଖ୍ୟ ପ୍ରଶାସକ ଭାବରେ ମୁହଁରେ ଶତଗାମ୍ଭୀର୍ଯ୍ୟର ପ୍ରକାଶ । ସେ କୁର୍ଚ୍ଚିର ମାହାତ୍ମ୍ୟ ଅଲଗା । କୌଣସି କଥା ଶୁଣିବା ପୂର୍ବରୁ ଆରମ୍ଭ ହେଲା ଧୀର ଅଥଚ ଖୁବ୍ ଗମ୍ଭୀର ସ୍ୱରରେ ।

''ଡାକ୍ତର ଦାସ, ମୋର ସମୟ ନାହିଁ । ପି.ଏ. ଆସିଲେ ମୋତେ ଡିକ୍‌ଟେସନ ଦେବାକୁ ହେବ । ଆପଣ appointment କରି ଆସିବା ଉଚିତ ହୋଇଥା'ନ୍ତା ।''

ଡାକ୍ତର ରାମଧନ ଅତ୍ୟନ୍ତ ବିନମ୍ର ଭାବରେ କହିଲେ, 'ମୁଁ ଦୁଃଖିତ ସାର୍ । ଦୀର୍ଘ ଏକମାସ ହେବ ଆପଣଙ୍କୁ ଅଫିସ ସମୟରେ ପାଇ ପାରିଲିନି । ଆପଣ ଏତେ ବ୍ୟସ୍ତ ରହୁଛନ୍ତି । ଆପଣଙ୍କୁ କହିଥିଲି ସାର୍ କଥା ପ୍ରସଙ୍ଗରେ,

Digitized by srujanika@gmail.com

ଗତ ତିନିମାସ ହେବ ଫାଇଲଟା ମିଳିପାରୁନି । ଆପଣଙ୍କ ପାଖକୁ ଆସିଥିବାର ହିଁ ରେକର୍ଡ଼ ଅଛି । ଭାବିଲି ଅଫିସ ପୂର୍ବରୁ ଆପଣଙ୍କ ସହିତ ସାକ୍ଷାତର ସୁଯୋଗଟା ମିଳିଯିବ ।''

''ତା' ସତ ଯେ ... ହେଲେ ମୁଁ ଏତେ ବ୍ୟସ୍ତ, ଆଉ ସେସବୁ problemକୁ ମୁଁ ଠିକ୍ କରିଦେଇଛି । ଏସବୁ ଠିକ୍ ଚାଲିବ । ନୂଆ ସେକ୍ସନ ଅଫିସର ଆସିଗଲେଣି । ଆପଣଙ୍କ ସହିତ ଆଲୋଚନା କରି ମୁଁ ଖୁବ୍ ଖୁସି ହୋଇଥାନ୍ତି, ହେଲେ ମୋର ଅନ୍ୟସବୁ ଜରୁରୀ କାମ ଅଛି । ସମୟ ଏତେ ଅଭାବ, ଅଯଥାରେ ଆପଣଙ୍କର ସମୟ ନଷ୍ଟ ହେଲା – ସଚିବ ମହାଶୟ ଭଦ୍ରଭାବରେ କହିପକାଇଲେ । ''Thank you sir, so kind of you'' କହି, ଡାକ୍ତର ଟିଙ୍ଗାରାମ ସାହେବଙ୍କ ଦପ୍ତରରୁ ବାହାରି ଆସିଲେ । ପଛରେ ତାଙ୍କର ସ୍ୱୟଂକ୍ରୀୟ ଦରଜାଟା ଧଡ଼କରି ବନ୍ଦ ହୋଇଗଲା । ଶାସନ ସଚିବଙ୍କ ସହାନୁଭୂତିଶୀଳ ଶେଷପଦକ କଥାର ଉତ୍ତର ମନେ ମନେ ଡାକ୍ତର ଟିଙ୍ଗାରାମ ପୀରବାବୁଙ୍କ ଭାଷାରେ ଦେଲେ ''ଡାକ୍ତର ପୁଣି ସମୟ'' ଏକ ସୁଦୀର୍ଘ-ଶ୍ୱାସ ସହିତ ।

* * * * * *

ଡା: ମନୋରଞ୍ଜନ ମଲ୍ଲିକ, ସରକାରଙ୍କର G. A. ଡିପାର୍ଟମେଣ୍ଟର ବିଶେଷ ଶାସନ ସଚିବ । ପାଠକେ ମନେକରନ୍ତୁ ନାହିଁ ଯେ ଡାଃ ମଲ୍ଲିକ ଜଣେ ମଣିଷ ଅଥବା ପଶୁଡାକ୍ତର । ସେ ଜଣେ ସନ୍ଦର୍ଭ ଡାକ୍ତର । ବିଶ୍ୱବିଦ୍ୟାଳୟରୁ କୌଣସି ଏକ ଗବେଷଣାତ୍ମକ ସନ୍ଦର୍ଭ ଉପରେ ପି.ଏଚ୍.ଡି. ଉପାଧି ପାଇଛନ୍ତି । ମି: ମଲ୍ଲିକଙ୍କ I.A.S. ପ୍ରାପ୍ତି ପରେ ଏ ଚାକିରିକାଳ ମଧ୍ୟରେ ଏହି ପି.ଏଚ୍.ଡି. ଲାଭ ।

କିଛିବର୍ଷ ତଳେ ମି: ମଲ୍ଲିକଙ୍କର ଆସାମକୁ ବଦଳି ହେଲା । ମି: ମଲ୍ଲିକ ସେତେବେଳେ ନଗର ଉନ୍ନୟନ ବିଭାଗର ଶାସନ ସଚିବ । ଭୁବନେଶ୍ୱର V.I.P. ଏରିଆ ଶହୀଦନଗରରେ ସେତେବେଳେ ସେ ଖଣ୍ଡେ ଘର ତୋଳିବା ଆରମ୍ଭ କରିଦେଇ ଥାଆନ୍ତି । ବଦଳିରେ ଚାଲିଗଲେ, ପୁଣି ଅନ୍ୟ ରାଜ୍ୟକୁ, ବିଶେଷ ସୁବିଧା ବ୍ୟବସ୍ଥାରେ ହେଉଥିବା ଘର ଖଣ୍ଡିକ ତାଙ୍କର ସମ୍ପୂର୍ଣ୍ଣ ହେବାର ଅସୁବିଧା ହୋଇଯିବ । ତେଣୁ କରି study leaveରେ ରହିଲେ ବିଶ୍ୱବିଦ୍ୟାଳୟରେ ପି.ଏଚ୍.ଡି. କରିବା ନାମରେ ।

ଇଂରାଜୀ ସାହିତ୍ୟରେ ମି: ମଲ୍ଲିକଙ୍କର ଅସାମାନ୍ୟ ଦକ୍ଷତା । ତା'ରି ଉପରେ ତାଙ୍କର ସନ୍ଦର୍ଭ । ବହୁ ଉଚ୍ଚକୋଟୀର ବୋଲି ବିଶେଷ ସମ୍ପାଦଦାତାଙ୍କ ମତ । ସେହିଦିନରୁ ମି: ମଲ୍ଲିକ ଡା: ମଲ୍ଲିକଙ୍କୁ ରୂପାନ୍ତରିତ ହୋଇଛନ୍ତି ।

Digitized by srujanika@gmail.com

ସର୍ବଭାରତୀୟ ସେବାର ସଭ୍ୟ ତଥା ସାଧାରଣ ଶାସନ ବିଭାଗର ବିଶେଷ ସଚିବ ହୋଇଥିବାରୁ ଏକ ସୁରମ୍ୟ ଅଟ୍ଟାଳିକା ସରକାର ଯୋଗାଇ ଦେଇଛନ୍ତି ଖାସ ରାଜଦାଣ୍ଡ ଉପରେ । ସାମନାରେ ଯଥେଷ୍ଟ ଜାଗା ବଗିଚା ପାଇଁ । ସରକାରୀ ମାଳି ଦୁଇ ଦୁଇଟା ଖଞ୍ଜା । ଡାଃ ମଲ୍ଲିକଙ୍କ ରୁଚି ମଧ୍ୟ ତାରିଫ୍‌ଯୋଗ୍ୟ । ବହୁ ବିଜାତୀୟ ଚାରା ଗଛରେ ଡାଃ ମଲ୍ଲିକ ଗଢ଼ିତୋଳିଛନ୍ତି ଏକ ମନୋରମ ବାଟୀକା କୋଠୀର ପରିସର ମଧ୍ୟରେ । ବିଗତ ତିନିବର୍ଷଧରି ରାଜ୍ୟ ଫଳପୁଷ୍ପ ପ୍ରଦର୍ଶନୀରେ ଡାଃ ମଲ୍ଲିକଙ୍କ ଗୋଲାପ ପାଇ ଆସୁଛି ସର୍ବଶ୍ରେଷ୍ଠ ପୁରସ୍କାର । ସେ ଅବସରରେ ମୁଖ୍ୟମନ୍ତ୍ରୀ କୁହନ୍ତି—"ଡାଃ ମଲ୍ଲିକ, ଆପଣ ଜଣେ କରିତ୍‌କର୍ମା ବ୍ୟକ୍ତି । ଓଡ଼ିଶା ଶାସନରେ ଅତ୍ୟନ୍ତ ଜଟିଳ ଫାଇଲ ଗଦା ଭିତରୁ ମଧ୍ୟ ଆପଣ ବାହାରିଯାଇ ପି.ଏଚ୍.ଡି. କରିପାରୁଛନ୍ତି ଓ ଏହି ସହରର ପରିବେଶ ପାଇଁ ଏତେ ଦାନ ମଧ୍ୟ କରିପାରୁଛନ୍ତି" । ଠିକ୍ ସେହି ସମୟରେ ଉଦ୍ୟାନ ବିଭାଗ ଉପନିର୍ଦ୍ଦେଶକ ଯୋଡ଼ ହସ୍ତରେ ଡାଃ ମଲ୍ଲିକଙ୍କୁ ଅଭିନନ୍ଦନ ଜଣାନ୍ତି ।

ଡାଃ ମଲ୍ଲିକଙ୍କ ସହ ଡାଃ ଟିଙ୍ଗାରାମଙ୍କ ଘନିଷ୍ଠତା ବହୁ ବେଶୀ ବୋଲି ରାଜଧାନୀର ସବୁରି ମହଲରେ କୁହାକୁହି ହୁଅନ୍ତି । G.A. ଡିପାର୍ଟମେଣ୍ଟର ବିଶେଷ ସଚିବ ପଦରେ ଅଭିଷିକ୍ତ ହେବା ପରଦିନ ହିଁ ଡାଃ ମଲ୍ଲିକ ନିଜଆଡୁ ଡାଃ ଟିଙ୍ଗାରାମଙ୍କୁ ଏକ ଉପଯୁକ୍ତ ବାସଗୃହର ବ୍ୟବସ୍ଥା କରିଦେବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ସମୟ ଅଭାବରୁ ଡାଃ ଟିଙ୍ଗାରାମ ଏ ବିଷୟରେ ଡାଃ ମଲ୍ଲିକଙ୍କୁ ହେତୁ କରାଇ ପାରୁନାହାନ୍ତି । ଡାଃ ମଲ୍ଲିକଙ୍କର G.A. Deptt.କୁ ଆସିବା ତିନିବର୍ଷ ପୂରିଗଲାଣି । ସକାଳେ ସମ୍ବାଦପତ୍ରରୁ ଜାଣିବାକୁ ପାଇଲେ ଡାଃ ମଲ୍ଲିକଙ୍କର ବଦଳି ସମ୍ଭାବନା ସମ୍ପର୍କରେ, ବିଶେଷ ସମ୍ବାଦଦାତାଙ୍କ ଭବିଷ୍ୟବାଣୀ ମାର୍ଫତରେ । ତେଣୁ ଡାଃ ମଲ୍ଲିକଙ୍କ ସହିତ ସାକ୍ଷାତର ଯଦି ଡେରି ହୁଏ, ବରଂ ଡାକ୍ତରଖାନା ନ ଯାଇ ଛୁଟିରେ ରହିବେ, କିନ୍ତୁ ଯେପରି ହେଉ ଆଜି ହିଁ ଡାଃ ମଲ୍ଲିକଙ୍କୁ କୋଠୀରେ ସାକ୍ଷାତ କରି ବାସଗୃହ ପରିବର୍ତ୍ତନର ଗୋଟାଏ ନିଷ୍ପତ୍ତି କରାଇନେବା ଉଚିତ ବୋଲି ଗୃହିଣୀଙ୍କ ତାଡ଼ନାରେ, ସ୍ଥିର ଚିତ୍ତରେ ସିଦ୍ଧାନ୍ତ କରି, ସଅଳ ସଅଳ ନିତ୍ୟକର୍ମ ସମାପନ କରି ସକାଳ ଆଠଟା ପୂର୍ବରୁ ପହଞ୍ଚିଲେ ଡାଃ ଟିଙ୍ଗାରାମ ଡାଃ ମଲ୍ଲିକଙ୍କ କୋଠୀରେ ।

ଡାଃ ମଲ୍ଲିକ, ତାଙ୍କ ମନୋରମ ଉଦ୍ୟାନରେ ମାଡାମ ମଲ୍ଲିକଙ୍କ ସହିତ ବସି ସମ୍ବାଦପତ୍ର ପଢ଼ିବା ସହିତ ଦେଶ ବିଦେଶର ସାମ୍ପ୍ରତିକ ରାଜନୀତି ଉପରେ ଗୁରୁଗମ୍ଭୀର ଟିପ୍‌ପଣୀମାନ ଦେଉଥା'ନ୍ତି ଓ ମାଡାମ ମଲ୍ଲିକ ନିଜ ପତିଙ୍କ ରାଜନୀତି ଜ୍ଞାନସାଗରର ଗଭୀର ଗଣ୍ଡ ମଧ୍ୟରେ ଉବୁଟୁବୁ ହୋଇ ନିଜର ସୌଭାଗ୍ୟପାଇଁ

Digitized by srujanika@gmail.com

ଭଗବାନଙ୍କ ପାଖରେ ଆଖିବୁଜି କୃତଜ୍ଞତା ଜଣାଉଥା'ନ୍ତି । ଡାଃ ଟିଙ୍ଗାରାମଙ୍କ ଆବିର୍ଭାବରେ ଉଭୟ ପ୍ରକୃତିସ୍ଥ ହୋଇଉଠିଲେ ।

"ହେଲୋ ଡକ୍! ହାଉ ୟୁ ?" ଗଭୀର ଆତ୍ମୀୟତାର ସ୍ୱରରେ ଅଭିନନ୍ଦନ ଜଣାଇଲେ ଡାଃ ମଲ୍ଲିକ ଓ ସଙ୍ଗେ ସଙ୍ଗେ ମାଡାମ ମଲ୍ଲିକଙ୍କୁ ଡାଃ ଟିଙ୍ଗାରାମଙ୍କ ସହିତ ତାଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ କଥାବାର୍ତ୍ତା ହେବାକୁ କହି ଉଠିଗଲେ ପ୍ରକୃତିର ଡାକରାର ଉତ୍ତର ଦେବାକୁ ଇଙ୍ଗିତରେ ଜଣାଇ ଦେଇ ।

ମାଡାମ ମଲ୍ଲିକ ମଧ୍ୟ ଅଳ୍ପ ସମୟ ତାଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ କ'ଣ କ'ଣ କଥାବାର୍ତ୍ତା ହୋଇ ବବୁର୍ଚ୍ଚିକୁ ଏକ କପ୍ ଚା' ଡାକ୍ତରବାବୁଙ୍କ ପାଇଁ ବରାଦ କରି ଦେଇ ଭିତରକୁ ଚାଲିଗଲେ ।

ପ୍ରାୟ ଏକ ଘଣ୍ଟା ଏ ଭିତରେ ବିତିଗଲାଣି । ବବୁର୍ଚ୍ଚିର 'ଚା' ଶେଷ ହୋଇ ଡାଃ ଟିଙ୍ଗାରାମଙ୍କର ତିନି ଚାରିଟା ଧଳା ପିଙ୍କାର ଫାଉଁଶରେ ଚା' ପିଆଲାର ଗର୍ଭଟି ଘନ କୁହେଳିରେ ଭର୍ତ୍ତିହୋଇ ଗଲାଣି, ଅଥଚ ଡାଃ ମଲ୍ଲିକ ବା ମାଡାମ ମଲ୍ଲିକଙ୍କର ଆଉ ଦର୍ଶନ ନାହିଁ । ମାଡାମ ହେଲେ ଆସିଲେ ତାଙ୍କୁ ଅନ୍ତତଃ ରିକ୍ୱେଷ୍ଟ କରିଯା'ନ୍ତେ ସାହେବଙ୍କୁ ତାଙ୍କ ପାଇଁ ଟିକେ ସୁପାରିଶ କରିବାକୁ । ଗୃହ ଚାକର ଏ ମଧ୍ୟରେ ଆସି ଚା କପ୍‌ଟା ନେଇ ଯାଉ ଯାଉ କହିଗଲା "ସାହେବ ବାଥ୍‌ରୁମ୍‌ରେ । ମାଡାମ କହିଲେ ଆଉ ସାମାନ୍ୟ ଅପେକ୍ଷା କରିବାକୁ ।"

ସାହେବଙ୍କର କେତେଖଣ୍ଡ ସାବୁନ୍ ସରେ କି ବାଥ୍‌ରୁମରେ ଦୀର୍ଘ ଦେଢ଼ଘଣ୍ଟା ଧରି ?,?? ଭାବି ଭାବି ଟିଙ୍ଗାରାମ କୂଳକିନାରା ପାଇଲେ ନାହିଁ ।

କିଛି ସମୟ ପରେ ପୋର୍ଟିକୋ ତଳେ ସରକାରୀ ଗାଡ଼ି ଲାଗିଲା । ତା ଭିତରେ ଆସି ରହିଲା ସାର୍‌ଙ୍କର ୱାଟର ଜଗ୍ ଓ ନାଲି ସାଲୁକନାରେ ବନ୍ଧା ଦୁଇଟି ବଡ଼ ବଡ଼ ଫାଇଲ୍ ବିଡ଼ା । ପରେ ପରେ ଡାଃ ମଲ୍ଲିକ୍ ହାତରେ ଗୋଟାଏ V.I.P. ଆଟାଚି ଧରି ବାହାରି ଆସିଲେ ।

"ହେଲୋ ଡାଃ ଦାସ୍, କ'ଣ ମାଡାମଙ୍କର ପ୍ରେସକ୍ରିପ୍‌ସନ୍‌ଟା ହୋଇଗଲା ତ ?

"ୟେସ୍ ସାର୍ ।

"ଥାଙ୍କ୍ୟୁ, ସୋ କାଇଣ୍ଡ ଅଫ୍ ୟୁ । ଆଉ କ'ଣ ଡାଃ ଦାସ କୁହନ୍ତୁ !

"ସାର୍, ମୋ କ୍ୱାଟର୍ସ ସମ୍ପର୍କରେ ଆପଣ ଯେ—"

Digitized by srujanika@gmail.com

"ଆରେ ଆପଣ ଏପର୍ଯ୍ୟନ୍ତ ଅର୍ଡ଼ର ପାଇନାହାନ୍ତି ? ହ୍ୱାଟ୍ ଏ ଷ୍ଟ୍ରେଞ୍ଜ ? ମୁଁ ତ କେବେଠାରୁ କହିଦେଇଛି । ରିଏଲି ଡାଃ ଦାସ, ମୁଁ ବୁଝିପାରୁନି ଏ ସରକାର ଚାଲିବ କିପରି ଏଭଳି ଗୁଡ଼ାଏ ଗଧଙ୍କୁ ନେଇ ? ଏନି ୱେ ଆଇ ୱିଲ୍ ଲୁକ୍ ଟୁ ଇଟ୍ ।"

"ସୋ କାଇଣ୍ଡ ଅଫ୍ ୟୁ ସାର୍ ।"

"ଆଚ୍ଛା ଡାଃ ଦାସ, ମୁଁ ଆସୁଛି । ଆଉ ସମୟ ନାହିଁ । ଏକ୍‌ଜାକ୍ଟଲି ଦଶଟାରେ ସି.ଏମ୍.ଙ୍କ ସହିତ ଡିସ୍‌କସନ୍ ଅଛି । ଆପଣଙ୍କୁ ଏତେ ସମୟ ଅପେକ୍ଷା କରିବାକୁ ହେଲା । ଆଇ ଆମ୍ ସ୍ରୋ ସରି ।"

"ନାଇଁ ସାର୍, ଡାକ୍ତରଙ୍କର ପୁଣି ସମୟ କ'ଣ ସାର୍" ।

"ଦାଟ୍‌ସ ଟ୍ରୁ, ଦାଟ୍‌ସ ଟ୍ରୁ ।" ଚଳନ୍ତା ଗାଡ଼ି ଭିତରୁ ହାତ ହଲାଉ ହଲାଉ ଡାଃ ମଲ୍ଲିକ ବାହାରିଗଲେ ସଦର ଗେଟ୍ ପାର ହୋଇ ।

* 'ଅମୃତାୟନ' ଜୁନ୍– ୧୯୯୩

Digitized by srujanika@gmail.com

# ମେରିଆ ବଳଦ

ଶାରଦାବାବୁ ଆଜକୁ ଦୁଇମାସ ହେବ ଚାକିରୀରୁ ଅବସର ଗ୍ରହଣ କଲେଣି । ସରକାରୀ ବାସଭବନଟି କିନ୍ତୁ ଛାଡ଼ି ନାହାନ୍ତି । ଅଣଚାଳିଶ ବର୍ଷ ଚାକିରୀକାଳ ମଧ୍ୟରେ ନିଜପାଇଁ ଘରଖଣ୍ଡେ କରିପାରି ନାହାନ୍ତି । ଯଦିଓ ତାଙ୍କର ଅନେକ ବନ୍ଧୁଙ୍କୁ ଭୁବନେଶ୍ୱରରେ ଖଣ୍ଡେ ଖଣ୍ଡେ ଜାଗା ଅଥବା ବିଭିନ୍ନ ଗୃହଯୋଗାଣ ସଂସ୍ଥା ଜରିଆରେ ଘରବାଡ଼ି କରାଇବାରେ ସମସ୍ତ ସହଯୋଗ କରିଛନ୍ତି ।

ଉତ୍ସାହ ବିନା କ'ଣ କେହି କିଛି କରିପାରନ୍ତି ? କବିଙ୍କ ଲେଖନୀ ଚାଲେ ନା କଳ୍ପନାବିଳାସୀଙ୍କ କଳ୍ପନାର ସୁଅ ଛୁଟେ ? ରାଜନୀତି କରନ୍ତୁ, ଶାସକ ହୁଅନ୍ତୁ, ସାମ୍ବାଦିକ ହୁଅନ୍ତୁ ବା ସମାଜର ତଳେ ଥିବା ଗୁଣ୍ଡାଶ୍ରେଣୀୟ ଯେ କେହି ହୁଅନ୍ତୁ, ବିନା ଉତ୍ସାହରେ କେହି କିଛି କରିପାରନ୍ତି ନାହିଁ । କୌଣସି ସୂତ୍ରରୁ ଉତ୍ସାହ ନ ମିଳିଲେ ଗୁଣ୍ଡାଗିରୀ କ'ଣ ବଢ଼ନ୍ତା ନା ଉପରବାଲେ ଉତ୍ସାହିତ ନ କଲେ ଅଧସ୍ତନ ଦପ୍ତରରେ ବିଶୃଙ୍ଖଳା ଘଟନ୍ତା ? ସବୁକିଛି ଚାଲିଛି ଏ ଜଗତରେ ଉତ୍ସାହ ଦ୍ୱାରା । କୁମୁଦ କମଳଙ୍କ ପ୍ରସ୍ଫୁଟନରେ ଉତ୍ସାହିତ ହୋଇ କୁଆଡ଼େ ଚନ୍ଦ୍ର ସୂର୍ଯ୍ୟଙ୍କର ଉଦୟ ଆବିର୍ଭାବ ଘଟେ ବିଦଗ୍ଧ କବିଙ୍କ ମତରେ । ହୁଏତ ଏହାର ଓଲଟା ବି ହୋଇପାରେ । କିନ୍ତୁ ଦୁର୍ଭାଗ୍ୟ, ଶାରଦାବାବୁଙ୍କୁ ଘର ଖଣ୍ଡିଏ ଭୁବନେଶ୍ୱରରେ କରିବା ପାଇଁ କେହି ଉତ୍ସାହିତ କରିପାରିଲେ ନାହିଁ । ଶାରଦାବାବୁଙ୍କ ଭଳି କ'ଣ ସମୟ ତାଙ୍କର କୌଣସି ବନ୍ଧୁଙ୍କର ଅଛି ? ଶାରଦା ବାବୁଙ୍କର ସିନା ସମୟର ପର୍ଯ୍ୟାପ୍ତତା ବହୁତ ବେଶୀ ଯେ, ଭୋର ପାଞ୍ଚଟାରୁ ଦିନ ନ'ଟା ଓ ସନ୍ଧ୍ୟା ସାଢ଼େ ପାଞ୍ଚରୁ ରାତି ନ'ଟା ପର୍ଯ୍ୟନ୍ତ, ନିର୍ଦ୍ଦିଷ୍ଟ ହାତଗଣତି କେତେକ ବନ୍ଧୁଙ୍କ ଘରେ ମୁହଁମାରି ତାଙ୍କ ହାନିଲାଭ ବୁଝିବା କାର୍ଯ୍ୟରେ ବ୍ୟସ୍ତ ରୁହନ୍ତି । ଏପରିକି ଘରେ ପିଲାଛୁଆଙ୍କ, ଦେହପା ଖରାପ ହେଲେ ମଧ୍ୟ ପିଲାକୁ ସାଇକେଲରେ ବସାଇ ଡାକ୍ତର ବାବୁଙ୍କ ପାଖକୁ ଗଲାବେଳେ ରାସ୍ତାରେ ସାଇପଡ଼ିଶାଙ୍କ ଘରକୁ ଡାକ ମାରି ଭଲମନ୍ଦ ପଚାରି ଯାଆନ୍ତି ଓ ଛିଗୁଲେଇ ଛିଗୁଲେଇ କେତେ କ'ଣ ଟାପରା କରି ଯା'ନ୍ତି ।

ଶାରଦାବାବୁଙ୍କ ପତ୍ନୀ ସାହିର ବରିଷ୍ଠ ମହିଳା, ତେଣୁ ସେ ପ୍ରାୟ ସବୁ ସ୍ତ୍ରୀ ଲୋକଙ୍କର ଅପା । ସେଥିପାଇଁ ସାଇ ଯାକର ବାରପଣ ମାଇପେ ଶାରଦାବାବୁଙ୍କ

Digitized by srujanika@gmail.com

ଶାଳୀ । ଆଉ ବାକି କେତେକ ଯଦିଓ ଭାଇବୋହୂ ଲେଖା ହୁଅନ୍ତି, ଶାରଦା ବାବୁଙ୍କ ଟାହୁଲି ଟାପରାରୁ ତଥାପି କିନ୍ତୁ ସେମାନେ ବର୍ତ୍ତି ପାରନ୍ତି ନାହିଁ ।

ଅଣଚାଳିଶ ବର୍ଷ ଚାକିରୀକାଳ ଭିତରେ ଶାରଦାବାବୁଙ୍କ ଦୈନନ୍ଦିନ ଚଳଣି ପୁରାପୂରି ରୁଟିନ ବନ୍ଧା । ସକାଳ ସାଢ଼େ ଚାରିରେ ଶଯ୍ୟା ତ୍ୟାଗ । ପାଞ୍ଚଟା ସୁଦ୍ଧା ଫାଲ୍‌ଟା ମାରି କାନ୍ଧରେ ଖଣ୍ଡେ ତଉଲିଆ ବା ଗାମୁଛା ପକେଇ ସାହି ଦାଣ୍ଡରେ ଟହଲ ମରା ସାଙ୍ଗକୁ ସମସ୍ତଙ୍କ ହାନି ଲାଭ ବିଷୟରେ ବୁଝିବା ସହିତ କାହାଘରେ ଗତ ରାତିରେ କେତେ ଫୁଟଣ ତାଙ୍କ ହାଣ୍ଡିଶାଳରେ ଫୁଟିଛି ଓ କାହା ବେଡ୍‌ରୁମ୍‌ରେ କ'ଣ ସବୁ ଚର୍ଚ୍ଚା ହୋଇଛି ସେ ବିଷୟ ଆଉ ଜଣକ ଘରେ ଖଞ୍ଜାଖଞ୍ଜି କରି କହି ହାସ୍ୟରୋଳ ସୃଷ୍ଟି କରି ନ'ଟା ବେଳକୁ ବସାକୁ ଫେରି ଅନ୍ୟାନ୍ୟ ନିତ୍ୟକର୍ମ ସାରି ଠିକ୍ ସାଢ଼େ ନ'ଟାରେ ଯୌତୁକରେ ପାଇଥିବା ରାଲେ ସାଇକେଲ ଖଣ୍ଡକ ଚଢ଼ି ବାହାରନ୍ତି ନିଜ କାର୍ଯ୍ୟାଳୟକୁ ।

ଶାରଦାବାବୁ ଜୀବନରେ ରାଜ୍ୟ ସଚିବାଳୟ ଠାରୁ ଆରମ୍ଭକରି ବିଭିନ୍ନ ନିର୍ଦ୍ଦେଶାଳୟ ତଥା ଚେକ୍ ଗେଟ୍ ପର୍ଯ୍ୟନ୍ତ ଦାୟିତ୍ୱ ବହନ କରିଛନ୍ତି ଓଡ଼ିଶା ଅର୍ଥ ବିଭାଗର ବିଭିନ୍ନ ପଦର ଅଧିକାରୀ ଭାବରେ । ଅର୍ଥ ବିଭାଗର ଏଫିସିଏନ୍‌ସି ଅଡ଼ିଟ୍‌ରୁ ତାଙ୍କ କାର୍ଯ୍ୟ ଆରମ୍ଭ ଜଣେ ଅଡ଼ିଟର ଭାବରେ । କାର୍ଯ୍ୟରେ ନିପୁଣତା ଓ ସଚ୍ଚୋଟତା ତାଙ୍କୁ ଯଦିଓ କାହାର ଶତ୍ରୁ କରାଇଥାଏ, ଈର୍ଷାର କାରଣରୁ ସେ କଥା ନିଆରା, ନହେଲେ ଚାକିରୀ, ଜୀବନରେ ସେ ଥିଲେ ଅଜାତଶତ୍ରୁ । ଶାରଦାବାବୁଙ୍କ କାର୍ଯ୍ୟନିଷ୍ଠାରୁ କେହି ପଦୋନ୍ନତି କ୍ଷେତ୍ରରେ ତାଙ୍କୁ ତାଙ୍କର ଶତ୍ରୁଜ୍ଞାନ କରିଥିଲେ ମଧ୍ୟ ବ୍ୟକ୍ତିଗତ ଜୀବନରେ ଶାରଦା ବାବୁଙ୍କ ସାହାଯ୍ୟ ସହାନୁଭୂତି ତାଙ୍କ ପରିବାରରେ ଶାରଦାବାବୁଙ୍କ ପାଇଁ ଏକ ବିଶେଷ ସ୍ଥାନ ରଖିଥାଏ ।

ଦିନକର କଥା, ଶାରଦାବାବୁ ତାଙ୍କର ସେହି ପୁରୁଣା ମଡେଲ 'ରାଲେ ସାଇକେଲ ଖଣ୍ଡକ ଧରି ପହଞ୍ଚିଗଲେ ତାଙ୍କର ବ୍ୟକ୍ତିଗତ ବନ୍ଧୁ ଅଧ୍ୟାପକ ଡ଼ାଃ ଧରଙ୍କ ପାଖରେ । ତାଙ୍କ ସହିତ ଶାରଦାବାବୁଙ୍କ ବନ୍ଧୁତା ଖାଲି ଶୁଖିଲା ପଡ଼ୋଶୀ ଭାବରେ ନୁହେଁ; ସେ ବନ୍ଧୁତା ହେଉଛି ଏକ ନିଚ୍ଛକ ଆନ୍ତରିକତାର ନିଦର୍ଶନ । ଦୀର୍ଘ କୋଡ଼ିଏ ବର୍ଷ ଭୁବନେଶ୍ୱରରେ ରହିବା ମଧ୍ୟରେ ବିଭିନ୍ନ କାରଣରୁ ଡାଃ ଧରଙ୍କର ବହୁ ବନ୍ଧୁବିଚ୍ଛେଦ ଘଟିଥିଲେ ମଧ୍ୟ ଶାରଦାବାବୁଙ୍କ ସହିତ ପ୍ରତିଦିନ ତାହା ନିବିଡ଼ରୁ ନିବିଡ଼ତର ହୁଏ ।

ଡ଼ାଃ ଧର କ୍ଲାସରୁ ଆସି ଦେଖନ୍ତି ଶାରଦାବାବୁ ତାଙ୍କୁ ଅପେକ୍ଷା କରି ବସିଛନ୍ତି ।

Digitized by srujanika@gmail.com

କିହୋ କଥା କ'ଣ ? ଫାଇଲ ପୋକ ଏ ବେଳରେ ଦପ୍ତର ଛାଡ଼ି ଏଠି ? ଡ଼ା: ଧର ତାଙ୍କର ଚିରାଚରିତ ଭାଷାରେ ସମ୍ଭାଷଣ ଜଣାଇଲେ ।

ଶାରଦାବାବୁଙ୍କ ସ୍ୱରରେ କିନ୍ତୁ ବ୍ୟାକୁଳତା । କ୍ଷେତ୍ରମୋହନ ବାବୁ, ଯେ କି ନିଜର ପଦୋନ୍ନତି ଅବରୁଦ୍ଧ ହେବା କାରଣରୁ ଶାରଦାବାବୁଙ୍କୁ ଏକ ବନ୍ଧୁ ଶତ୍ରୁ ମନେକରି ଦୀର୍ଘ ଦୁଇ ବର୍ଷ ଧରି କଥାବାର୍ତ୍ତା ପର୍ଯ୍ୟନ୍ତ ବନ୍ଦ କରି ଦେଇଥିଲେ – ମଣିଷର ଏକ ଅଦ୍ଭୁତ ଖିଆଲ – ଆଜି ସେ ଶଯ୍ୟାଶାୟୀ ଅତି ସାଙ୍ଘାତିକ ଧରଣର ବସନ୍ତରେ । ଦେହରେ ସୋରିଷ ପକାଇବାକୁ ଜାଗା ନାହିଁ । ତେଣୁ ସେ ଆସିଛନ୍ତି ଡ଼ା: ଧରଙ୍କ ସହିତ ପରାମର୍ଶ କରିବାକୁ, ହୋମିଓପାଥିରେ ଯଦି ଏହାର କିଛି ତୁରନ୍ତ ପ୍ରତିକାର ଥାଏ । ସେ ଯାହା 'ହେଉନା କାହିଁକି, ଈଶ୍ୱରଙ୍କ କୃପାରୁ କେତେ ପାନ ଔଷଧ ସେବନ ପରେ କ୍ଷେତ୍ରମୋହନଙ୍କ ଯନ୍ତ୍ରଣା କମି ସପ୍ତାହକ ମଧ୍ୟରେ ସମ୍ପୂର୍ଣ୍ଣ ସୁସ୍ଥ । କ୍ଷେତ୍ରମୋହନଙ୍କ ସହିତ ଶାରଦାବାବୁଙ୍କ ପୂର୍ବ ବନ୍ଧୁତ୍ୱ ପୁଣି ଗଢ଼ି ଉଠିଲା ଓ ବଢ଼ିଚାଲିଲା ।

ଏହିଭଳି ଏକ ଚରିତ୍ରର ଶାରଦାବାବୁ । ଅଫିସରେ ସମାନ 'ଦଶଟାବେଳେ ପହଞ୍ଚି ଠିକ୍ ପାଞ୍ଚଟା ବେଳେ ଦପ୍ତର ଛାଡ଼ନ୍ତି । ପରିଷ୍କାର ଟେବୁଲରେ କାମ ଆରମ୍ଭ କରି ମେଜ ନିର୍ମଳ କରି ବାହାରି ଆସନ୍ତି ।

ଓଡ଼ିଶାର ବିତ୍ତ ସେବାକୁ ପଦୋନ୍ନତି ପାଇବା ଦିନଠାରୁ ଶାରଦା'ବୁ ସବୁବେଳେ କୌଣସି ଦପ୍ତରରେ ହିସାବ ଅଧିକାରୀ ଭାବରେ କାର୍ଯ୍ୟ କରିବାକୁ ପସନ୍ଦ କରି ଆସିଛନ୍ତି ଓ ସେ ଦାୟିତ୍ୱରେ ଥିବା ପର୍ଯ୍ୟନ୍ତ ସଂପୃକ୍ତ ଅନୁଷ୍ଠାନର ସର୍ବାଙ୍ଗୀନ ଉନ୍ନତି ଲାଗି ସମ୍ୱଳର ବ୍ୟବସ୍ଥା ପାଇଁ ସବୁମନ୍ତେ ସେ ସଚେଷ୍ଟ ଥା'ନ୍ତି । ଅଳ୍ପ କେତେଦିନ ବିକ୍ରିକର ଅଧିକାରୀ ଭାବରେ କୌଣସି ଏକ ଚେକ୍ ଗେଟରେ ତାଙ୍କୁ ଅବସ୍ଥାପିତ କରାହୋଇଥିଲା । ସେ କେଇ ଦିନ ସତେ ଯେପରି ଶାରଦା'ବୁ ଅଣନିଃଶ୍ୱାସୀ ହୋଇ ପଡୁଥିଲେ । କିପରି ଛାଡ଼ିବେ ସେ ସଂସ୍ଥା ବୁଦ୍ଧି ଜୁଟିଲା ନାହିଁ ତାଙ୍କୁ । ବାଧ୍ୟହୋଇ ଛୁଟୀରେ ପଳେଇଲେ । ଶେଷରେ ପୁଣି ଭୁବନେଶ୍ୱରରେ ଆଉ ଏକ ନିର୍ଦ୍ଦେଶାଳୟରେ ହିସାବ ଅଧିକାରୀ ।

ପସନ୍ଦ ନ ଥିବା ଜାଗାକୁ ବଦଳିହେଲେ ବା ସ୍ୱସନ୍ତୋଷ କାର୍ଯ୍ୟ କରିବାର ମଉକା ନ ଥିଲେ ଲୋକେ ଛୁଟୀରେ ଯିବାକୁ ଇଚ୍ଛା କରିଥା'ନ୍ତି । ଉପରିସ୍ଥ ହାକିମଙ୍କ ଠାରୁ ଆରମ୍ଭ କରି ମନ୍ତ୍ରୀ ମହୋଦୟଙ୍କ ପର୍ଯ୍ୟନ୍ତ ଯଦି ହାରି ଗୁହାରି କରାଯାଏ ଏ ନେଇ, ସୁବିଧା ନ ହୋଇ ପାରିଲେ, ସେ ସମସ୍ତଙ୍କ ପାଖରୁ ମଧ୍ୟ ଛୁଟୀରେ ଯିବାକୁ ପରାମର୍ଶ ମିଳେ । ଦେଶ ଚଳାଇବାକୁ ହେଲେ ଏପରି ବି

Digitized by srujanika@gmail.com

ହୋଇଥାଏ । ପ୍ରକୃତ କଥା କାର୍ଯ୍ୟ କରିବାରେ ସନ୍ତୋଷ ନ ଥିଲେ ଜନସେବାମୂଳକ କାର୍ଯ୍ୟ ହେବ ବା କିପରି ? ବଦଳି ଓ ନିଯୁକ୍ତି ସମୟରେ ଏ ସବୁ ପ୍ରତି ଧ୍ୟାନ ରଖିବା ମଧ୍ୟ ଏକ ଅସମ୍ଭବ ବ୍ୟାପାର, ତଥାପି ବଦଳି କାର୍ଯ୍ୟ ଯେତେ ଅସମ୍ଭବ ହେଲେ ମଧ୍ୟ ତାହା ହେବ ହିଁ ହେବ । ଏଥିରେ ମଧ୍ୟ କେତେକଙ୍କ ଆନନ୍ଦ ଅଛି ।

ଏସବୁ କାର୍ଯ୍ୟନେଇ ଜନସେବା କାର୍ଯ୍ୟରେ ଯେତେ ଯାହା ବ୍ୟାଘାତ ଜନ୍ମିଲେ ମଧ୍ୟ ସେଥିକୁ କାହାରି ନିଘା ନ ଥାଏ । ଏକ ନିଥର ଜଳାଶୟରେ ତରଙ୍ଗ ସୃଷ୍ଟି କରିବାକୁ ଛୋଟପିଲାଏ ଯେଭଳି ଆନନ୍ଦ ପାଆନ୍ତି, ମୋର ମନେହୁଏ ବଦଳି ପାଲା କରି ଥୋକାଏ ଲୋକ ଠିକ୍ ସେହିପରି ଆନନ୍ଦ ଲାଭ କରିଥା'ନ୍ତି ଯଦି ଅନ୍ୟ କିଛି ଉଦ୍ଦେଶ୍ୟ ନ ଥାଏ ।

ସେ ଯାହାହେଉ, ଖାସ୍ ରାଜଧାନୀରେ ଏକ ଶୃଙ୍ଖଳା ସ୍ଥାନରେ ପୁନଃ ସଂସ୍ଥାନ ପାଇଁ ସାଙ୍ଗମାନେ ଶାରଦା'ବୁଙ୍କୁ ଲକ୍ଷ୍ମୀଛଡ଼ା ବୋଲି ଧିକ୍କାର କଲେ, ସେ ହସିହସି କହନ୍ତି "ଲକ୍ଷ୍ମୀଙ୍କ ପଛରେ ତୁମେ ସବୁ ଗୋଡ଼ାଅ ବାବୁ ମୁଁ ପାରିବି ନାହିଁ । ଗୋଡ଼ାଇବା କଥା ଯଦି ହୁଏ, ତେବେ ଲକ୍ଷ୍ମୀ ମୋ ପଛରେ ଗୋଡ଼ାଉ ନାହାନ୍ତି, କିଏ ତାଙ୍କୁ ମନାକରୁଛି ?"

"ହଁ ଲକ୍ଷ୍ମୀ ତ ଗୋଡ଼ାଇଛନ୍ତି, ହେଲେ ତୁ ଧରା ଦେଇନୁ । ଚଳିବୁ କିପରି ?" ବନ୍ଧୁମାନେ କହନ୍ତି ।

"ସମୟ ତ ସରିଲା ପ୍ରାୟ, ଆଉ ପାଞ୍ଚ ଛଅ ବର୍ଷ ଚାକିରୀ । ପୁଅ ପାଞ୍ଚୋଟି । କୋଉଥିପାଇଁ, ଆଜି ପର୍ଯ୍ୟନ୍ତ ଯାହା କରିନାହିଁ ଏବେ ଶେଷ ପର୍ଯ୍ୟାୟରେ ପହଞ୍ଚି ତାହା ଆରମ୍ଭ କରିବି ?" ଉତ୍ତର ଦିଅନ୍ତି ଶାରଦା'ବୁ ।

ଏ ଘଟଣାର ଛଅ ବର୍ଷ ପରେ ଶାରଦା'ବୁ ଅବସର ଗ୍ରହଣ କରିଛନ୍ତି । ଅପେକ୍ଷା କରିଛନ୍ତି, ଜୀବନସାରାର ସଞ୍ଚିତ ଭବିଷ୍ୟନିଧି ପାଣ୍ଠି ମିଳିଲେ ଭୁବନେଶ୍ୱରରେ କେଉଁଠି ଖଣ୍ଡେ ଘର କିଣିବେ ତିନି ଲକ୍ଷ ଟଙ୍କା ଭିତରେ । ପିଲାମାନେ ରହିବେ, ନିଜେ ଚାଲିଯିବେ ଜନ୍ମସ୍ଥାନ, ଭିଟାମାଟି ଜଗିବସିବାକୁ, ଗାଁକୁ ।

ଗୋପବନ୍ଧୁ ଛକ ପାଖ ସେହି ଟୁ-ଆର-ବି ଘରର ମୋହ ଏବେବି କଟି ନାହିଁ । ବାରିପଛପଟ ସଫେଇ ଗଳିର ରାସ୍ତାକଡ଼କୁ ନିଜ ହାତରେ ତିଆରି ସିମେଣ୍ଟ ସ୍ଲାବ୍‌ର ଏକ ବେଞ୍ଚ ବା ସାମନାପଟକୁ ପଣସ ଗଛ ମୂଳରେ ଥିବା ପିଣ୍ଡି ଉପରେ ବାହାରୁ ବୁଲି ବୁଲି ଆସି ଶାରଦା'ବୁ ଚକା ପକାଇ ବସିପଡ଼ନ୍ତି ।

Digitized by srujanika@gmail.com

ସାହିର ସାନ ସାନ ପିଲାଏ ତାଙ୍କ ନାତୁଣୀ ସହିତ ଆସି ଘେରି ଯା'ନ୍ତି ପଛପଟେ । ପିଲାଙ୍କ ଦରୋଟି ଭାଷାରେ, ସବୁରି ସାଙ୍ଗରେ ଗେଲ ଖେଳୁ ଖେଳୁ ଶାରଦା'ବୁ ହେଇଯା'ନ୍ତି ତାଙ୍କ ନାତୁଣୀ ଠାରୁ ମଧ୍ୟ ବୟସରେ ସାନ, ଠା' ପାଣି ହୋଇ ଖାଇବା ପାଇଁ ବୋହୂର ତାଗିଦା ନ ପାଇବାଯାଏ । ପୂର୍ବରୁ ପୁଅ, ପୁତୁରା, ଝିଆରୀମାନଙ୍କୁ ଧରି ବସୁଥିଲେ, ଏବେ ନାତି ନାତୁଣୀ, ତଫାତ ଏତିକି । ଅନ୍ୟ କାହାଘରେ ବସି ଜମେଇ ଗପିବାଅଭ୍ୟାସ ଛାଡ଼ିଲେଣି ଶାରଦା'ବୁ ଅନେକ ଦିନରୁ । ସେ ପୁରୁଣା ସାଙ୍ଗମାନଙ୍କ ମଧ୍ୟରୁ ପ୍ରାୟ ଆଉ କେହି ନାହାନ୍ତି । କିଏ ଘର ବଦଳେଇ ଅନ୍ୟ କେଉଁ ୟୁନିଟ୍‌କୁ ଚାଲି ଗଲେଣି ତ କିଏ ନିଜର ନୂଆ ଘରକୁ, ଆଉ ବା କିଏ ସବୁଦିନକୁ ଅବସର ନେଇ ସାହି ଛାଡ଼ି ଚାଲିଗଲେଣି ।

ବୋହୂର ଡାକରାରେ ଶାରଦା'ବୁ ସୁଧାର ପିଲାଟି ପରି ଉଠିଯା'ନ୍ତି ଠା' ପାଣି ହୋଇଥିବା ଜାଗାକୁ । ଶାରଦା'ବୁଙ୍କ ଘରଣୀ ମୁରୁକି ମୁରୁକି ହସନ୍ତି ଓ ବେଳେ ବେଳେ ନିଜର ଚାପା ରାଗକୁ ହସି ହସି ପ୍ରକାଶ କରିଦିଅନ୍ତି "ଏଥରକ ଥଣ୍ଡା, ମୋ ଉପରକୁ ଖାଲି ପାଇକପଣ ଦେଖଉଥିଲେ, ଭାତ ବାଢ଼ି ପଚାଶଥର ଡାକିଲେ ବି ଶୁଭୁ ନ ଥିଲା, ଏବେ ଠିକ୍ ଜବତ୍, ଏକା ଡାକରେ ଯାଇ ପିଢ଼ା ଉପରେ ।

ଶାରଦା'ବୁ କିଛି ନ କହି ନାତୁଣୀ ସାଙ୍ଗରେ ଭୋଜନ ସାରି ତାକୁଇ ଧରି ବିରାଜମାନ ହୁଅନ୍ତି ଶୟନ କକ୍ଷରେ ।

ଅବସର ନେବାର ଦୁଇମାସ ବିତିଯାଇଥିଲେ ମଧ୍ୟ ଅଭ୍ୟାସ ଦୋଷ କଟିନାହିଁ । ସକାଳ ସାଢ଼େନ'ରେ ଭୋଜନ ସାରି ବାହାରିଯା'ନ୍ତି ଶାରଦାବାବୁ ସେଇ ପୁରୁଣା ଦପ୍ତର ଆଡ଼େ । ଆଜିକାଲି ପତ୍ନୀଙ୍କ ଦୟାରୁ ମିଳିଥିବା ସେଇ ଶୁନ୍ୟ ଗାଡ଼ି ଆଉ ନାହିଁ । ପୁଅମାନେ କରିଦେଇଛନ୍ତି ଗୋଟିଏ ଲୁନା ମୋପେଡ ବର୍ଷେ ଦୁଇବର୍ଷ ହେବ । ରୂପରେ କିନ୍ତୁ ତାହା ତାଙ୍କର ସେ ପୁରୁଣା ରାଲେ ଗାଡ଼ିଠାରୁ କୌଣସି ଗୁଣରେ ଅଧିକ ନୁହେଁ ।

ଦପ୍ତରରେ ପହଞ୍ଚି ସବୁରି ପାଖରେ ମୁହଁ ମାରନ୍ତି, ସବୁରି ଦୁଃଖସୁଖ କଥା ପଚାରନ୍ତି । କେହି ପଚାରନ୍ତୁ ବା ନ ପଚାରନ୍ତୁ, ଆର୍ଥିକ ବ୍ୟାପାରରେ ତାଙ୍କର ଦୀର୍ଘଦିନର ଅଭିଜ୍ଞତା ଓ ଚାକିରୀର ଶେଷ ପର୍ଯ୍ୟାୟର ଦପ୍ତର ହୋଇଥିବାରୁ ମାୟା ମୋହର ତାଡ଼ନାରେ ଉପରେ ପଡ଼ି କିଛି ଉପଦେଶ ଦେବାକୁ ଭୁଲନ୍ତି ନାହିଁ ଶାରଦା'ବୁ । ଏଇମିତି ବୁଲିବୁଲି ପାଞ୍ଚଟା ବେଳକୁ ଫେରନ୍ତି ଘରକୁ । ନାତୁଣୀ ମନେକରେ ଜେଜେ ଚାକିରୀରେ ଅଛନ୍ତି । ଅଫିସ ଯାଉଛନ୍ତି ।

* * * * * *

Digitized by srujanika@gmail.com

ପିଲାବେଳେ ଶୀତଦିନ ସକାଳେ ଖରାପୁଆଁ ନାଁରେ ବେଙ୍ଗଳା ପାଖରେ ବସି ନିରବଚ୍ଛିନ୍ନ ଭାବରେ କିପରି ତିନି ଚାରିହଳ ବଳଦ ଚକା ଚକା ଭଉଁରୀ ନ୍ୟାୟରେ ମେରିଆ ବଳଦକୁ ଅନୁସରଣ କରି ଧାନ ଖଳାରେ ବୁଲୁଥାନ୍ତି ଓ ତାଙ୍କରି ଖୁରାର ମାଡ଼ରେ ଧାନ ସବୁ କେଣ୍ଡାରୁ ଅଲଗା ହୋଇଯା'ନ୍ତି, ଦେଖିବାକୁ ଭାରି ଆନନ୍ଦ ଲାଗୁଥିଲା । ତେଣୁ ଦୀର୍ଘ ଚାଳିଶବର୍ଷ ପରେ ଗାଁରେ ପହଞ୍ଚି ପିଲାଦିନର ସେ ସ୍ମୃତି ମନେ ପଡ଼ିଗଲା । ସରକାରୀ ଚାକିରୀ ଭିତରେ, ଧରାବନ୍ଧା ଦଶରୁ ପାଞ୍ଚ ଡିଉଟିପାଇଁ ସକାଳୁ ଉଠିବାର ଅଭ୍ୟାସ ଆଉ ନାହିଁ । ତଥାପି ଗଲି ଖଳାଆଡ଼େ । ପହଞ୍ଚି ଦେଖେ ବେଙ୍ଗଳାପକା ପ୍ରାୟ ସରିଗଲାଣି । ପାଳଝଡ଼ା ଶେଷ ପର୍ଯ୍ୟାୟରେ । ବଳଦ ସବୁ ଖୋଲା ହୋଇ ଯେଝା ଗୁହାଳକୁ ଚାଲି ଗଲେଣି । ହେଲେ ମେରିଆ ବଳଦଟି ସେମିତି ଘୂରିବୁଲୁଛି ନିଜ ଅଭ୍ୟାସର ତାଡ଼ନାରେ ଖଳାରେ । ନିଘା ନାହିଁ ତା ସାଥି ବଳଦମାନଙ୍କ ଆଡ଼କୁ, ନା ପାଦତଳ କୁଟା ଆଡ଼କୁ ।

ମନେପଡ଼ିଗଲା ଶାରଦା'ବୁଙ୍କ କଥା । ରାଜଧାନୀରେ ଶାରଦାବାବୁ ଆଉ ଗାଁରେ ମେରିଆ ବଳଦ । ମେରିଆବଳଦର ଅଭାବରେ ଧାନ ଅମଳ ଯେପରି ସମ୍ଭବ ନୁହେଁ, ଶାରଦାବାବୁଙ୍କ ଭଳି ଲୋକ ଅଭାବରେ ଶାସନ କଳ ମଧ୍ୟ ଅଚଳ । ଜଗନ୍ନାଥଙ୍କ ଦୟାରୁ, ଏହିଭଳି ଜଣେ ଜଣେ ମେରିଆ ବଳଦ ପାଇଁ ହିଁ ଅମଳ ଚାଲିଛି, ହେଲେ ମେରିଆ ବଳଦର ଲାଭ କ'ଣ ? କେହି ବୁଝେ ତା କଥା — ନା ଚାଷୀ ନା ପ୍ରଶାସକ ? ଓମରିଆ ବଳଦର ଥୋମଣାରେ ଖାଲି ପାଞ୍ଚଣ ପାହାର ଆଉ ଶାରଦା'ବୁଙ୍କ ପେନ୍‌ସନ୍ ଓ ଗ୍ରାଚ୍ୟୁଟି ପାଇବାରେ ମଧ ଢେର ଅସୁବିଧା । ଖାଲି ଅବ୍‌ଜେକ୍‌ସନ୍ ।

* 'ଶତଦ୍ରୁ' ସଂଖ୍ୟା ୧୧ – ୧୯୯୩

Digitized by srujanika@gmail.com

# ସଭ୍ୟତାର ଢେଉ

ଇଞ୍ଜିନିୟର ପ୍ରମୋଦ ସାହୁ ଅବସର ଗ୍ରହଣ କଲେଣି ପ୍ରାୟ ପାଞ୍ଚ ବର୍ଷ ହେବ । ରାଜଧାନୀରେ ପାଞ୍ଚ ଖଣ୍ଡ ପ୍ଲଟ୍ ସହିତ, ପୁରୁଣା ଭୁବନେଶ୍ୱରରେ ଲିଙ୍ଗରାଜଙ୍କୁ ମୁହଁ କରି ଖଣ୍ଡିଏ ଭଲ ପକା ଦୋ ମହଲା ଘର ମୁଖ୍ୟଯନ୍ତ୍ରୀ ଥିଲାବେଳେ କରିଛନ୍ତି । ଏବକୁ କେତେବର୍ଷ ହେବ ନିଜ ପୁଅ ନାଁରେ ଖଣ୍ଡିଏ ସରକାରୀ ଜମି ହସ୍ତାନ୍ତର ହୋଇଥିବା ଛୋଟ ପ୍ଲଟ୍ ଉପରେ ଆଉ ଖଣ୍ଡେ ଦୋ ମହଲା ତିଆରି ଚାଲିଛି । ଅବଶ୍ୟ ଏଇ କେଇ ମାସ୍ ହେବ କାମ ଟିକିଏ ଶିଥିଳ ହୋଇ ଯାଇଛି । ଜଗାରଖା ଓ ଦରକାର ବେଳେ ତାଙ୍କର ମୂଲିଆ ମଜୁରିଆର ଅଭାବ ଦୂର କରିବା ପାଇଁ କେତେକ ଆଦିବାସୀ ପିଲାଛୁଆ ଧରି ମଝିରେ ମଝିରେ ଆସି ଡେରା ପକାନ୍ତି ସେଇ ଅସଂପୂର୍ଣ୍ଣ କୋଠାରେ ।

ଏବେ ଜଣେ ବୃଦ୍ଧ ଆଦିବାସୀ, କାଶୀପୁରର କୁଟିଆ କନ୍ଧ, ସେଠି ଅଛି । ବୟସ ୭୦ରୁ ଅଧିକ । ଘର କେଉଁଠି ବୋଲି ପଚାରିଲେ କହେ—''କଳାହାଣ୍ଡିର କାଶୀପୁର ।'' ବୃଦ୍ଧଟିର ଏବେବି ସେହି ''କଳାହାଣ୍ଡି'' ମୋହ । କାଶୀପୁର ଯେ କେବେଠାରୁ କୋରାପୁଟ ଜିଲ୍ଲା ସହିତ ସାମିଲ୍ ହୋଇ ନିଜ ରାଜସ୍ୱ ସରହଦକୁ ହଜାଇ ଦେଇ ସାରିଲାଣି ତା'ର ନାମ କି ପ୍ରଭାବ ଏହି କୁଟିଆ କନ୍ଧ 'ପାଏନ ବୁଢୁ' ଉପରେ ପଡି ନାହିଁ, ଯଦିଓ ବିଧାତା ଲିଖନରୁ ସେ ଆଜି ଆସି ସଭ୍ୟ ଜଗତର ଏକ ଆଧୁନିକତମ ସହର, ଏକ ରାଜ୍ୟର ରାଜଧାନୀରେ ରହୁଛି କେତେ ମାସ ଧରି ।

ଏକ ଅଧାଗଢ଼ା ଦୋ'ତାଲା କୋଠାର ଉପର ତାଲାରେ ବୃଦ୍ଧ ବସିଛି ଜଗୁଆଳି ହୋଇ । ଶୀତଦିନର କଅଁଳ ଖରାକୁ ପିଠିକରି ବସି ''ଧୁଙ୍ଗିଆ'' ଖାଇବାକୁ ସଜିଲ କରୁଛି ସରଞ୍ଜାମ । ଆଜି ପାଖରେ ନାହିଁ ତାର ଜୀବନସଂଗିନୀ ''ଭାଜିଖାଇ'' ଏସବୁ ସାଇତି ଦେବାକୁ ତା ପାଇଁ ।

ଶୀତ ସକାଳର କଅଁଳ ଖରା ମୁଣ୍ଡ ପିଠିରେ ବାଜି ସତେ ଯେପରି ତା'ର ଜମାଟ ବନ୍ଧା ଲୋତକ ଗ୍ରନ୍ଥିକୁ ତରଳାଇ ବିନ୍ଦୁ ବିନ୍ଦୁ କରି ନାକ କଡ଼ ଦେଇ ବୁହାଇ ଦେଉଛି ଅଶ୍ରୁର ଧାରାରେ । ସଜଳ ଆଖି ଆଗରେ ଲୋତକ

Digitized by srujanika@gmail.com

ବିନ୍ଦୁ ଭିତରେ ଦେଖା ଯାଉଛି ସେଇ ଅତୀତର ସବୁ ସ୍ମୃତି । ସେ ବୁଝିପାରୁନି, ଯେତେବେଳେ ଅତୀତକୁ ବର୍ତ୍ତମାନ ସହିତ ତୁଳନା କରୁଛି ସେହି ଦୃଶ୍ୟର ମାଧ୍ୟମରେ, ସେ ସତରେ ସେତେବେଳେ ସ୍ୱାଧୀନ ଥିଲା ନା ବର୍ତ୍ତମାନ; ସେ ସେତେବେଳେ ପ୍ରକୃତିର କୋଳରେ ଖୁବ୍ ଆନନ୍ଦରେ ନିରଳସ ସୁସ୍ଥ ଜୀବନ୍ କଟାଉଥିଲା ନା ବର୍ତ୍ତମାନର ରାଜନୀତିକ ସ୍ୱାଧୀନତାର ଦୋହାଭିତରେ ଏକ ସୁଖ ସମୃଦ୍ଧି ଜୀବନ କଟାଉଛି ? ତା'ର ସେହି ନିର୍ମଳ, ନିଷ୍କପଟ, ବ୍ୟଭିଚାରରହିତ ସଂସ୍କୃତି ବର୍ତ୍ତମାନ ଆହୁରି ଉନ୍ନତ, ନା ନବ୍ୟ ଶିକ୍ଷିତ ସମାଜ ଦ୍ୱାରା ତାହା ପରାଭୂତ ଓ ନିୟତିର କାଳଚକ୍ର ଭିତରେ ବିଲୁପ୍ତ ପ୍ରାୟ ? କଙ୍କାଳ-ସାର ପିଞ୍ଜରା ଭିତରୁ ଏକ ଦୀର୍ଘଶ୍ୱାସ ବାହାରି ଆସିଲା, ବୁକୁଥରା ଗୋଟିଏ ଦୁଇଟା ଶୁଖିଲା, ପେଲା-କାଶ ସହିତ ।

ବୁଢ଼ାକୁ ନାଁ ସମ୍ପର୍କରେ ପଚାରିଲେ ସେ କହେ ଜନ୍ମ ବେଳକୁ ତା'ର ତାଳୁରେ ଖୋଟାଏ ଗଜା ହୋଇଥିଲା ଯେ, ମା' ତାର ପାଣିରେ ବୁଡ଼େଇ ବୁଡ଼େଇ ତାକୁ ଭଲ କରିଥିଲା । ତେଣୁ ତାର ନାମ "ପାଏନବୁଡୁ" ।

ସ୍ତ୍ରୀ ବିଷୟରେ ପଚାରିଲେ ବୁଢ଼ା ଏକ ଲମ୍ବା ଦୀର୍ଘଶ୍ୱାସ ଛାଡ଼ି କିଛି ସମୟ ଚୁପ୍ ରହି ଲୁହ ଜକଜକ ଆଖିରେ ତଳକୁ ଚାହିଁ କହେ—"ତାର କଥା ଆଉ କାହିଁକି ପଚାରୁଛନ୍ ବାବୁ ? ଷୋଳ ବରଷ୍ ବୟଷନୁ ତାକୁ ମୁଇଁ ଧାଙ୍ଗଡ଼ୀଘରୁ ଘିଚିଆଣି ବିହା ହୋଇଥିଲି ଯେ, ଗଲା ବେଲକୁ ମୋତେ ଟିକେ ହେଲେ ନାହିଁ ଚାହିଁଲା । ଦୁଇ ବରଷ୍ ତଲେ ଆଖି ମୁଞ୍ଜି ମୁଞ୍ଜି ମୋର୍ ହାତ୍‌କୁ ଧରି ଶୁଏ ପଡ଼ଲା ଯେ ଆର ନାହିଁ ଉଠି ସେ ଦିନୁ" ।

ଧାଙ୍ଗଡ଼ୀଘର ସମ୍ପର୍କରେ ଜିଜ୍ଞାସୁ ମନକୁ ଚରିତାର୍ଥ କରିବାକୁ ଯାଇ ବୁଢ଼ା କହି ଚାଲିଲେ—ବାବୁ ଆପଣ ହସିବେ, ଏ କଥା ଶୁଣିଲେ—ଆଉ ଆପଣଙ୍କ ଏ ହସ ଆମ ଆଦିବାସୀ ସଂସ୍କୃତିର କାଳ ହେଲା ବାବୁ । ପାଠପଢ଼ି ଆପଣମାନେ ଆପଣଙ୍କ ଭାଗବତ ଟୁଙ୍ଗୀ—ସଂସ୍କୃତିକୁ ପୋଡ଼ି ଖାଇଲେ ହସି ହସି ଅପସଂସ୍କୃତି କହି । ଏବେ ଆମର ନିଜସ୍ୱ, ସରଳ ଜୀବନରେ ହସ ଆଣୁଥିବା ଧାଙ୍ଗଡ଼ୀଘର ସଂସ୍କୃତିକୁ ମଧ୍ୟ ଟର୍ଚ୍ଚ ଲାଇଟ ଜରିଆରେ ହସି ହସି ଜାଳିଦେଲେ, ସାରିଦେଲେ ।

ଧାଙ୍ଗଡ଼ା ଓ' ଧାଙ୍ଗଡ଼ୀ ଘର, କୁଟିଆ କନ୍ଧ ସଂସ୍କୃତିର ଏକ ନିବିଡ଼ ଅଙ୍ଗ, ଏକ ଅବିଚ୍ଛେଦ ବୈଭବ । ଗୃହଯୋଗ୍ୟା ଗାଁର ସମସ୍ତ ଅଭିଆଡ଼ି ଝିଅ ଗାଁ ମୁଣ୍ଡରେ ଏକ ଘରେ ଏକାଠି ରାତ୍ରୀଯାପନ କରନ୍ତି ଓ ସେହିଭଳି ସବୁ ଅଭିଆଡ଼ା ଯୁଆନ୍ ଟୋକାଏ ଆଉ ଏକ ଘରେ—ନାଁ 'ଧାଙ୍ଗଡ଼ାଘର' । ନୂତନ ପଲ୍ଲବିତ

Digitized by srujanika@gmail.com

ଯୌବନର ଉତାଳ ଭାବନାକୁ କୁଟିଆ କନ୍ଧ ତା'ର ବାପା-ମା'ଙ୍କର କଡ଼ା ଶାସନ ଭିତରେ ବାନ୍ଧି ରଖେନା । ଛାଡ଼ିଦିଏ ଅରଣ୍ୟର ସାବଲୀଳ ବୃଦ୍ଧି ସହିତ ତାଳ ଦେଇ ବଢ଼ିବାକୁ । ଆନନ୍ଦରେ ରାତି ରାତି ଗୀତ ଗାଇ, ଜହ୍ନ ଆଲୁଅରେ ଧାଙ୍ଗଡ଼ା ଧାଙ୍ଗଡ଼ୀମାନେ ନାଚି ନାଚି ନିଜର ଜୀବନସାଥିଙ୍କୁ ଆବିଷ୍କାର କରନ୍ତି ଓ ଗଢ଼ି ତୋଳନ୍ତି ତାଙ୍କର ନୂତନ ସଂସାର ।

ସ୍ୱାଧୀନତାର ପ୍ରଥମ ସକାଳରେ "ଗାଅ ସ୍ୱାଧୀନ ଭାରତ ସ୍ୱାଧୀନ ଭାରତ, ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନରେ" ସଙ୍ଗୀତର ଅପୂର୍ବ ମାଦକ ଭରା ସ୍ୱର ସହିତ ତ୍ରିରଙ୍ଗା ପତାକା ଧରି ଦୂର ପାହାଡ ତଳେ, ମହାର୍ଜା ଅମଳର ଛୋଟ ପାଠଶାଳାର ପିଲାଏ ଯେତେବେଳେ ଆନନ୍ଦ ବିଭୋର, କୁଟିଆ କନ୍ଧପଲ୍ଲୀର ଏଇ ଯୁବକ ଯୁବତୀମାନେ ମଧ୍ୟ ଆନନ୍ଦରେ ପାଗଳ । କିଏ ଜଣେ ଯେତେବେଳେ ଧାଇଁ ଆସି କହିଲା ଯେ, ଆଜିଠାରୁ ସମସ୍ତେ ସ୍ୱାଧୀନ ହୋଇଗଲେ—କି ଆନନ୍ଦ ସେତେବେଳେ ଏ ଛୋଟିଆ ପଲ୍ଲୀରେ ! ସେମାନେ କ'ଣ ବୁଝିଲେ କେଜାଣି !! ପ୍ରକୃତି କୋଳରେ ବିନା ବାଧାରେ ଘୂରି ବୁଲୁଥିବା ଏ ଦୁଇଗୋଡ଼ିଆ ଜୀବ ଗୁଡ଼ିକ ସତେ ଯେପରି ଆହୁରି କିଛି ଅଧିକ ସ୍ୱାଧୀନତା ପାଇବେ ଏ ଆଶାରେ !! ଆନନ୍ଦରେ ଧରିତ୍ରୀକୁ ବାରମ୍ବାର ଚୁମ୍ବନ ଦେବାକୁ ଲାଗିଲେ ସେମାନଙ୍କ ଭିତରୁ ଅନେକ 'ପାଏନବୁଡୁ' ସହିତ । କିନ୍ତୁ ସେମାନେ ଯେ କ'ଣ ଆଶାକରି ଏତେ ଆନନ୍ଦ ବିଭୋର, ଖୋଲି କହିନାହାନ୍ତି କାହାକୁ କେବେ । ପାଏନବୁଡୁର ସ୍ମୃତି ଭିତରେ ମଧ୍ୟ ତାହା ଲେଉଟୁ ନାହିଁ ଆଜି ।

ପାଏନବୁଡୁର ନିଜ ଭାଷାରେ ଏହାର ବର୍ଣ୍ଣନା ଅତ୍ୟନ୍ତ ହୃଦୟସ୍ପର୍ଶୀ ।

କିଛି ବର୍ଷ ବିତିଗଲା ସ୍ୱାଧୀନ ଦେଶର ନାଗରିକ ଭାବରେ, ସେପରି କିଛି ସ୍ୱାଧୀନତା ସେମାନଙ୍କୁ ନ ମିଳିଥିଲେ ମଧ୍ୟ ସେମାନେ ଦେଖିବାକୁ ପାଇଲେ, ମାଟିଆ ଅଧା ପେଣ୍ଟ ଭିତରେ ଅଧାଲୁଚା ଧଳା କୁର୍ତ୍ତା, ମୁଣ୍ଡରେ ମାଟିଆ ଟୋପି ଓ ପାଦରେ ଚମଡାର ପାଣ୍ଡେଇ ପିନ୍ଧି, ହାତରେ ବନ୍ଧୁକ ଧରି କିଛି କିଛି ଲୋକ ଅଧା ଓଡ଼ିଆ ଅଧା ଇଂରାଜୀ ଭାଷାରେ କଥା ହୋଇ ମଝିରେ ମଝିରେ ଆସନ୍ତି ଜଙ୍ଗଲ ବୁଲିବାକୁ । ଶିକାର କରନ୍ତି—ବିନା ବାଛ ବିଚାରରେ ଗର୍ଭିଣୀ ହରିଣ, ମିରିଗ ଠାରୁ ଆରମ୍ଭ କରି ବାଘ ପର୍ଯ୍ୟନ୍ତ ।

ନିର୍ବିବାଦରେ ସାଧାରଣ ଲୋକ ଜଙ୍ଗଲ ଭିତରେ ପଶି ଏଭଳି ଶିକାର କରିବାର ଯେ ସ୍ୱାଧୀନତା, ପାଏନବୁଡୁ ସ୍ୱାଧୀନ ଭାରତରେ ହିଁ ପ୍ରଥମ କରି ଅଭିଜ୍ଞତା ହାସଲ କଲା ।

Digitized by srujanika@gmail.com

ପୂର୍ବରୁ ବର୍ଷରେ ଥରେ ଅଧେ, ମହାର୍ଜା ଆସୁଥିଲେ ଶିକାର କରି । ଆଗରୁ ଖବର ଆସୁଥିଲା । ଜଙ୍ଗଲରେ ଖେଦା ପଡୁଥିଲା ସ୍ଥାନୀୟ ଆଦିବାସୀଙ୍କ ସହାୟତାରେ । କେବଳ ଅଣିରା ମିରିଗ ବା ଗୋଟେ ଅଧେ ଅନ୍ୟ ଜନ୍ତୁ, ସମ୍ବର, କୁଟୁରା ବା ମଣିଷଖିଆ ବାଘ ମରା ହେଉଥିଲା, କିନ୍ତୁ ଏମିତି ଅବାଧ ଭାବରେ ପଶୁ ଶିକାର ସେ କେବେହେଲେ ଆଗରୁ ଦେଖି ନାହିଁ । ବରଂ ଲୁଚିଛପି କେହି ଯଦି ଶିକାର କରୁଥିଲା, 'ପାଏନବୁଡୁ' ପରି କେତେ ସାଙ୍ଗ ସାଥି ତା'ର, ତାକୁ ଧରି ମହାର୍ଜା ଆଗରେ ହାଜର କରାଉଥିଲେ । ଦଣ୍ଡ ପାଉଥିଲା ସେ, ପୁରସ୍କାର ପାଉଥିଲା କନ୍ଧ ପିଲା । ସ୍ୱାଧୀନ ଭାବରେ କୁଟିଆଙ୍କ ଭଳି ଜଙ୍ଗଲର ସବୁ ପଶୁ ମଧ୍ୟ ଆନନ୍ଦରେ ବିନା ଭୟରେ ଘୂରି ବୁଲୁଥିଲେ ନିଜ ଗୋଷ୍ଠୀ ଓ ଦଳକୁ ନେଇ । କିନ୍ତୁ ସ୍ୱାଧୀନ ଭାରତରେ ସବୁ ଓଲଟ ପାଲଟ । ସଭ୍ୟତାର ଢେଉ ଏବେ ସବୁକିଛି ଦୋହଲାଇ ଦେଇଛି ।

କିଛିଦିନ ପରେ ଚାଲିଲା ଏଇ ସଭ୍ୟ ବାବୁମାନଙ୍କ ଗମନା ଗମନ ଜଙ୍ଗଲ ଭିତରେ ଅବାଧ ଭାବରେ । ଗଛକଟା ଚାଲିଲା ବଡ଼ ବଡ଼ କରତ ସାହାଯ୍ୟରେ । ଦିନେ କୁଆଁତାରା ଉଠିବାକୁ ଆହୁରି କେଇ ଘଡ଼ି ରାତି ବାକିଅଛି । ଶୀତ ରାତି । ଧାଙ୍ଗଡ଼ା ଧାଙ୍ଗଡ଼ୀମାନେ ନାଚି ନାଚି ହାଲିଆ ହୋଇ ନିଜ ନିଜ ବସାଘରେ ଶୋଇ ପଡ଼ିଛନ୍ତି । ହଠାତ୍ ଧାଙ୍ଗଡ଼ୀ ଘରୁ ଚିତ୍କାର ଶୁଭିଲା । ସାରା ପଲ୍ଲୀ ଚେଇଁ ଉଠିଲା । ଦେଖାଗଲା ଲମ୍ବା ଲମ୍ବା ଚୋରା ଆଲୁଅର ପ୍ରଖର ଗତି ସହିତ ତାଙ୍କ ଦେଇ କେତେକ ବାବୁ ଧାଇଁ ପଳାଉଛନ୍ତି । ପଲ୍ଲୀର ଲୋକେ ନିଜ ନିଜ ଭିତରେ କ'ଣ ସବୁ ଗରଗର ହୋଇ କହି ଚାଲିଗଲେ ।

ପୁଣି କିଛିଦିନ ପରେ—ସେଇଭଳି ଏକ ଅମାବାସ୍ୟାର ଅନ୍ଧକାର ଭିତରେ ଏକ ବୁକୁଫଟା ଚିତ୍କାର । ପାଏନବୁଡୁ ଯାଇ ଦେଖେ ଏକ ନକଲି ସାହେବର କବନ୍ଧ ନାଚୁଛି ଲହୁ ଜୁଡୁବୁଡୁ ହୋଇ । ତା ମଝିଆଁ ପୁଅ ଶିକାରୁ କାନ୍ଧରେ ଫାର୍ଶା ପକାଇ ହାତରେ କଟାମୁଣ୍ଡଧରି ଚାଲିଛି ନିକଟସ୍ଥ ପୁଲିସ ଦାରୋଗା ପାଖରେ ଫେରାଦ ହେବାକୁ । ଧାଙ୍ଗଡ଼ୀଘରୁ ତାର ସାଥୀ ମୈହୁଲୀକୁ ଘିଚିନେବା ଅପରାଧରେ ଏ ବାବୁର ମୁଣ୍ଡଟାକୁ ସେ ଫାର୍ଶାରେ କାଟି ପକାଇଛି ।

ଆଇନ୍ ମାନେନା ଏ ସରଳତାର ସ୍ୱୀକାରୋକ୍ତି । ଆଇନ ଶୁଣିବାକୁ ଚାହେଁନା କେଉଁ କାରଣରୁ ଏ ହତ୍ୟା । ଶିକାରୁ ଗଲା ହାଜତକୁ ।

ଏହିପରି ଏକ ସରଳ ଆଦିବାସୀ ସଂସ୍କୃତି ଉପରେ ବାରମ୍ବାର ପ୍ରହାର, ଭାଙ୍ଗିଦେଲା ତାଙ୍କର ପରମ୍ପରା । ଆଜି ଆଉ ସେ ଧାଙ୍ଗଡ଼ୀଘର ନାହିଁ, ଧାଙ୍ଗଡ଼ାଘର

Digitized by srujanika@gmail.com

ନାହିଁ । କେବଳ ରହିଛି ବର୍ଷର କେତୋଟି ନିର୍ଦ୍ଦିଷ୍ଟ ଦିନରେ ରାତି ଉଜାଗର ହୋଇ ନାଚିବାର ଏକ ସାଧାରଣ ରୀତି ।

ଶିକାରୁଣ୍ଡ କଥା କହିଲା ବେଳକୁ ବୁଢ଼ା ପାଏନବୁଡ୍ଡୁର କଙ୍କାଳ-ସାର ବୁକୁ ଭିତରର କୋହ ଆଉ ଆଖିର ଲୁହରେ ଆସେ ଅମାବାସ୍ୟାର ଜୁଆର । ଅମାବାସ୍ୟାରେ ହିଁ ସାରା ଧରିତ୍ରୀ ଉପରେ ଥାଏ କଳା ରାତ୍ରୀର ଆବରଣ ।

ଶିକାରୁର ଉନ୍ନଦିନ କଥା ମନେପଡ଼ିଗଲା ବୁଢ଼ା ପାଏନବୁଡ୍ଡୁର । ସେଦିନ ସକାଳୁ ପାଏନବୁଡ୍ଡୁ ସବୁଦିନପରି ମୁଣ୍ଡରେ ଠେକା ବାନ୍ଧି କାନ୍ଧରେ ଫାର୍ଶା ପକାଇ ଆଗରେ ଆଗରେ ଚାଲିଛି । ପଛରେ ତା'ର ଆସନ୍ନ ପ୍ରସବା ଦୁଇ ପିଲାର ମା 'ଭାଜିଖାଇ' । ପିଠିରେ ବର୍ଷକର ପୁଅ ସୁକୁରୁକୁ ବାନ୍ଧି ମୁଣ୍ଡ ଉପରେ ପେଜ ତୋରାଣି ଲଦି ଚାଲିଥିଲା ଜଙ୍ଗଲର ଏବଂ ଝରଣା କୂଳରେ ଥିବା ସମତଳ ଭୂଇଁକୁ, ଯେଉଁଠି ସେ ମାଟି ତାଡ଼ି ଲଗାଇଥିଲା, ଜହ୍ନି, ଝୁଡ୍ଙ୍ଗ ଓ ଶିମ୍ବ । ଆଜି ପୁଣି କ'ଣ କ'ଣ ଲଗାଇବ ।

ଛୋଟ ଛୋଟ ଅନାବନା ଗଛ ଓ ବୁଦା ମାନଙ୍କୁ କାଟି, ପୋଡ଼ି କନ୍ଧମାନେ ଉଠିଆ କରି ଶସ୍ୟ ଉପୁଜାଉଥିଲେ ସ୍ୱାଧୀନ ଭାବରେ । ତାକୁଇ ନେଇ ଦୂର ଭବାନୀପାଟଣା ସହରରେ ବିକୁଥିଲେ ଓ ନିଜ ଦରକାର ମୁତାବକ ଚଳିବା ପାଇଁ ଆଣୁଥିଲେ ପରିବାର ପାଇଁ, ଖଦି, ଲୁଣ ଓ କେତେକ ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥ । ବର୍ଷରେ ଥରେ ଅଧେ ସେଠାକୁ ଗଲାବେଳେ ତାଙ୍କୁ ଯଦି କେହି ମିତ ବୋଲି ସମ୍ବୋଧନ କରିଦେଇଛି, ତା'ହେଲେ ଗ୍ରୀଷ୍ମକାଳରେ କୁଟିଆ କନ୍ଧେ ପତର ଟୋକେଇ ଭରା ନାନାବିଧ ଆମ୍ବର ଭାରରେ ଭରି ଦେଉଥିଲେ ତା'ଘର । ଏପରି ବନ୍ଧୁପାଗଳ ଏ ଜାତି !

ପାଏନବୁଡ୍ଡୁ କହେ—ଏବେ କ'ଣ ନାକାମାନେ ଜଙ୍ଗଲ ସଫା ପାଇଁ ନିଆଁ ଲଗାଉ ନାହାନ୍ତି ? ବୋଧହୁଏ ଆଜିକାଲି ତା'ଠାରୁ ଅଧିକ ହେଉଛି ଓ ସେଥିରେ ସରକାରୀ ଟଙ୍କା କେତେ ସରୁଛି ତାର ହିସାବ ନାହିଁ । ହେଲେ ଲାଭ କେତେ ? ଆମେ ବାବୁ ମଝିରେ ମଝିରେ ନିଜେ ଖୁସିରେ ଜଙ୍ଗଲ ସଫାକରି ପୋଡ଼ି, ତାଡ଼ି, ଫସଲ କରୁଥିଲୁ । ନିଜେ ଚଳୁଥିଲୁ, ମିତମାନଙ୍କୁ ଦେଉଥିଲୁ । ଆମ ଚାଷରେ ନୂଆ ଗଜାଗଛର ମୂଳ ଖୋଶାଇ ହୋଇ ବଢୁଥିଲେ କାହିଁରୁ କ'ଣ । ଆମେ ଜଙ୍ଗଲ ନଷ୍ଟରୁ ବଞ୍ଚାଉଥିଲୁ । କିନ୍ତୁ ସ୍ୱାଧୀନ ଦେଶରେ ଆମର ସେ ସ୍ୱାଧୀନତା ଆଉ ଆଜି ନାହିଁ । ଖାଇବାକୁ କନ୍ଦା ମିଳୁନାହିଁ । ଜମି ତ ନାହିଁ ଆମର, ସବୁ ତ ସରକାରର । ସ୍ୱାଧୀନ ସରକାରର । ଜମି ଚାଷକରି ଅନାଜ

Digitized by srujanika@gmail.com

ବା ପାଇବୁ କୋଉଠୁ ? ଆମ୍ବ ଟାକୁଆ, ତେନ୍ତୁଳି ମଞ୍ଜି ଓ କେତେକ ଅନାବନା ମୂଳ ଖାଇବୁ ନାହିଁ ତ ବଞ୍ଚିବୁ କିପରି ? ମଲେ ଅନାହାର ମୃତ୍ୟୁ ତ କୁହାଯିବନି, କାରଣ ଆମେ ତ ଖାଉଚୁ । ହୋଇପାରେ ସେ ଅଖାଦ୍ୟ, ମୃତ୍ୟୁ ଆମର ଅଖାଦ୍ୟ ଖାଇ, ଅନାହାରଜନିତ ନୁହେଁ । କି ଅଦ୍‌ଭୁତ ଯୁକ୍ତି !! ଖାଇବାକୁ ନ ଥିଲେ ଲୋକେ ଅଖାଦ୍ୟ ନ ଖାଇ ଆଉ କି ଆହାର ଖାଇବେ ? ଜୀବ ଥିବାତକ, ବଞ୍ଚିବାକୁ କାହାର ବା ଲୋଭ ନାହିଁ ? ଛାଡ଼ ବାବୁ ସେସବୁ କଥା । ଏସବୁ ହେଉଛି ଏକ ମୂର୍ଖ ଆଦିବାସୀର ଅବାନ୍ତର କଥା ।

ପାଏନବୁଡ୍ଡୁର ସ୍ୱର ଧୀରେ ଧୀରେ ଆହୁରି ଗମ୍ଭୀର, ଆହୁରି ଓଜସ୍ୱିନୀ ହୋଇ ଉଠୁଛି ।

"ବାବୁ, କହତ ଦେଖି—ଜଙ୍ଗଲ ନାହିଁ ତ, ଆଦିବାସୀ ସଂସ୍କୃତି କେନ୍ ଆଡୁ ଆସ୍‌ବା ? ମରଡ଼ି ପର୍ଡ଼ିବା ନାହିଁ ତ କଲାହାଣ୍ଡି କେ, ଆଉ କେନ୍ ଠାନ୍‌କେ ପଡ଼ର୍ବି ?" —ପାଏନବୁଡ୍ଡୁର ଏ ପ୍ରଶ୍ନର ଜବାବ ଦେବ କିଏ ?

"ବାବୁ, ଆଦିବାସୀ ସଂସ୍କୃତି ବଜାୟ ରଖୁଛନ୍ ବୋଲି, ଟିଭିନେ ଯେନ ଆଦିବାସୀ ନାଚ୍ ଆପଣମାନେ ଦେଖୁଛନ୍, ସେଥି କାଣା ସେ ରସ୍ ଅଛେ ? ସେ ମନ୍‌ଖୋଲା ଗୀତ୍ ଅଛେ କି ଆମର୍ ନିଜର୍ କପଡ଼ାଲତା ଅଛେ ? ଖାଲି ଲୋକ ମାନ୍‌କେ ଭୁତଉଛନ୍ ବାବୁ"—ପାଏନବୁଡ୍ଡୁ ଆଜି ସତେ ଯେପରି ଏକ ବିଦ୍ରୋହୀ ରାଜନୀତିକ ନେତା—ତାର ପ୍ରାଣର ଅବରୁଦ୍ଧ ଦ୍ୱାର ସେ ଖୋଲି ଦେଇଛି ସାମାନ୍ୟ ଏକ ସହାନୁଭୂତିଶୀଳ ଖୋଲା ମନର ଖୋଲା କଥାବାର୍ତ୍ତାରେ ।

ସେଦିନ, ପାଏନବୁଡ୍ଡୁ ଭାଗ୍ୟକୁ ଗୋଟାଏ କୁଟୁରା, ତା'ରି ସାମନାରେ କ୍ଷେତରେ ପଶି, ସିମ୍ବଲଟା ସବୁ ଖାଇ ଯାଉଛି । ରାଗରେ ସବୁ ରକ୍ତଯାକ ତା'ର ମୁଣ୍ଡକୁ ଚଢ଼ିଗଲା । ଫାର୍ଶାଟାକୁ ବୁଲାଇ ବୁଲାଇ ଦେଲା ଫୋପାଡ଼ି ଯେ, ବିଚରା କୁଟୁରା ଏକାଥରେ ଖତମ୍ । ମାରି ସିନା ଦେଲା ହେଲେ ମନରେ ତାର ବଡ଼ଦୁଃଖ । ପଶୁ ଶିକାରର ଉଦ୍ଦେଶ୍ୟ ନ ଥିଲା ତା'ର । ବିନା ଦରକାରରେ ସେ ପଶୁ ମାରେନା । ପ୍ରକୃତି ତା'ରି ସମ୍ଭାର ଭିତରେ ତା' ପରିବାର ପାଇଁ ଅନେକ ଖାଦ୍ୟ ସାଇତି ରଖିଛି । ଏ ନିରୀହ ପଶୁ, ତାରି ପରି ଏକ ପ୍ରକୃତିର ସନ୍ତାନ । ତାକୁ ବିନା ପ୍ରୟୋଜନରେ କାହିଁକି ବା ସେ ଜୀବନରୁ ମାରିବ ? କେବଳ ପରବ୍ ଦିନ ଛଡ଼ା ଶୀକାର ତାଙ୍କର ମନା ।

ଯାହାହେଉ ଆଉ କ୍ଷେତକାମ କରିବେ କ'ଣ, ଫେରିଲେ ଘରକୁ କୁଟୁରାଟିକୁ କାନ୍ଧରେ ପକାଇ । ଛୋଟ କୁଟିଆ ପଲ୍ଲୀରେ ସେଦିନ ବେଶ୍ ଏକ ଶିକାର

Digitized by srujanika@gmail.com

ଭୋଜିର ବ୍ୟବସ୍ଥା ହେଲା — ଆଜିକାଲିକାର କମ୍ୟୁନିଟ ଡିନର । ସମସ୍ତେ ଖୁସିରେ ଖାଇ ମହୁଲି ମୁନ୍ଦେ ମୁନ୍ଦେ ପିଇଦେଲେ । ହେଲେ ଭାଜିଖାଇର ପେଟର ଯନ୍ତ୍ରଣା ବଢ଼ିଲା । ସଞ୍ଜ ପ୍ରହରକୁ ପୁଅଟିଏ ଜନ୍ମ କରି ସେ ବେହୋସ । ପୁଅକୁ ଦେଖୁଛି କିଏ ? ଜଙ୍ଗଲ ଭିତରକୁ ଧାଇଁ ଯାଇ କ'ଣ କ'ଣ ଦୁଇଚାରିଟା ପତ୍ର ଛିଣ୍ଡାଇ ଆଣି ଶିକାରୁ ଛେଚି ରସ ପକାଇ ଦେଲା ନାକପୁଡ଼ା ଭିତରେ . ଗାଁର ପିଡେଇ ମାଝିଆଣୀ । ଭାଜିଖାଇ ସାଷ୍ଟାମ ହେଲା । ପୁଅକୁ ତାର ''ମା' ଗୁରୁସ'' ଖୋଇଲା — ନାଁ ଦେଲା-ଶିକାରୁ । କାରଣ ଶିକାର ଖାଇବା ପରେ ତା'ର ସେ ପୁଅର ଜନ୍ମ ।

ସେ ଶିକାରୁ ଆଜି ଜେଲ ହାଜତରେ । ଯାବଜ୍ଜୀବନ ସଶ୍ରମ କାରାଦଣ୍ଡ, ହତ୍ୟା ଅପରାଧରେ । ସାକ୍ଷୀଗୁହାର ଆବଶ୍ୟକତା ନ ଥିଲା । କାରଣ ଆସାମୀ ନିଜେ ସ୍ୱୀକାର କରିଛି ହାକିମଙ୍କ ଆଗରେ ଉଦତ୍ତ ଗଳାରେ ।

''ସରକାର ! ଆମର କାଣା ମା ବହେନ୍, ମା ବହେନ୍ ନୁହେଁ ସେ ? ସରକାର ! ତୋର ଆଗେ ତୋର ଝିକେ ଯଦି ଶାଳା ଏନ୍ତାକରି ଝିକି ଥାଏତା, ତୁଇ କାଣା କରିଥିତୁ କହ ?''

ହାକିମ ଘଡ଼ିଏ ଚୁପ୍ ରହି କହିଲେ : ''ହେଲେ ମଧ୍ୟ ଆଇନକୁ ତୁମ ହାତକୁ ତ ନେବାର ନ ଥିଲା ଶିକାରୁ ।'' ହାକିମଙ୍କ ଗଳାରେ କରୁଣାର ଆର୍ଦ୍ରତା ।

''ମୁଇଁ କାଣା କର୍‌ମି ମହାପୁରୁ । ମୋର ଖୁନ୍ ତ ଗରମ ହୋଇଗଲା । ଆମେ କନ୍ଧ ଜାତି, ମା ବହେନ୍‌କେ ଏନ୍ତା ନଜରଥି ନାଇଁ ଦେଖୁଁ ମହାପୁରୁ । ଆମେ ଅସଭ୍ୟ ମହାପୁରୁ । ଆମର ଜାଏତଠାନୁ ଆର କାଣା ଅଶା କର୍‌ବେ ମହାପୁରୁ ? ମୁଇଁ ତାକେ ମାରିଛେ ହଜୁର, ଯେନ୍ ଦଣ୍ଡ ଦେବୁ ଦେ, ମୁଇ ଆଦରି ନେବି ମହାପୁରୁ, ହେଲେ ଏନ୍ତା ସଭ୍ୟ ମୁଇଁ ନାଇଁ ହେଇପାରେ'' ।

ହାକିମଙ୍କ ଦୟା, ମୃତ୍ୟୁଦଣ୍ଡରୁ ଜାବଜ୍ଜୀବନ କାରାଦଣ୍ଡ ଆଦେଶ ।

ଆଧୁନିକ ସଭ୍ୟତାର ମାଡ଼ରେ ଆଦିବାସୀ ସଂସ୍କୃତି ଅପସଭ୍ୟତା ଭାବରେ ଦିନକୁ ଦିନ ଅପସରି ଯାଉଛି ଏ ଦୁନିଆରୁ ।

* 'ଅମୃତାୟନ' ପୂଜାସଂଖ୍ୟା — ୧୯୯୩

Digitized by srujanika@gmail.com

# ମଣିଷ ପ୍ରକୃତି ...

ସ୍ୱାଧୀନ ଭାରତର ଜନ୍ମବେଳର ସେ "ମୂଳବସତି" ଆଉ ନାହିଁ । ତାର ରୂପରେଖ ସବୁ ବଦଳି ଗଲାଣି । ବଦଳି ଗଲାଣି ମଧ୍ୟ ତା'ର ସେହି ପୁରୁଣା ଚଳଣି ।

ବିରୂପାର ଅଥଳ ଗଣ୍ଡ ଆଉ ନାହିଁ କି ମଝି କୁନ୍ଦର କାଶତଣ୍ଡି ଫୁଲର ସେ ସମ୍ଭାର ନାହିଁ । ଏବେ ଗାଁ ଦାଣ୍ଡରେ ଅଶିଣ ମାସର ସେ କାଦୁଅ ଅଛି ନା ପ୍ରଚଣ୍ଡ ନିଦାଘରେ ସରୁ ଧୂଳିଆ ମାଟିର ସେ କୋମଳତା ଅଛି ?

ଗୋଧୂଳିର ସେ ମନମୁଗ୍ଧକର ଗନ୍ଧ ନାହିଁ; ସଞ୍ଜ ପହରେ ଭାଗବତ ଘରେ ଭାଗବତ ଚର୍ଚ୍ଚା ନାହିଁ ଜଡ଼ାତେଲ ଦୀପ ଆଲୁଅରେ । ବର୍ତ୍ତମାନ ଚାଲିଛି ପ୍ରତି ଅଧ ଘଣ୍ଟାରେ ଥରେ ଲୁଚକାଳି ଖେଳୁଥିବା ଆଲୁଅ ଓ ଅନ୍ଧାରର ତାଳରେ ଚା' ଖଟିର ହିନ୍ଦି ସିନେମା ଗୀତର ଫୁଆରା ସହିତ ତାଳଦେଇ ବିଦେଶୀ ନାଲି ପାଣିର ଉତ୍ତେଜନାରେ ଅଫୁରନ୍ତ ଦୋ'ଅକ୍ଷରୀ ସମ୍ଭାଷଣ ଓ ତା ସାଥିରେ ପୌରାଣିକ ରାକ୍ଷସର ବୁକୁଫଟା ହସ ।

'ହଇଲୋ ଅଳପେଇଷାଣୀ, ତୋ ଘରେ ବାଡ଼ି ପଶିବାକୁ, ମୋ ପତର ନେଇ ଚୁଲିକି ଗଲୁ ଲୋ ଡାକୁଣୀ ଖାଇ'—ଏ ଘୋଷନାଦ ଆଉ ଶୁଣିବାକୁ ମିଳୁ ନାହିଁ । କାରଣ ତୋଟାତ ନାହିଁ, ପତର ସାଉଁଣୀଙ୍କ ଦୌରାତ୍ମ୍ୟ ଆସିବ କାହୁଁ ? ସବୁଆଡ଼େ ସଭ୍ୟତାର ଛାପ ।

ସେ ଯେଉଁ ମୁକ୍ତିରାମ ତୋଟା ଗାଁ ମୁହଁରେ, ତା'ରି ପାଖରେ ଗଢ଼ି ଉଠିଛି ଏକ ମହାବିଦ୍ୟାଳୟ ଓ ତୋଟା ଭିତରଯାକ ଛୋଟ ବଡ଼ ଅନେକ ଦୋକାନ । ଲେବେନ୍‌ଚୁସ୍ ଠାରୁ ଆରମ୍ଭ କରି କ୍ଷିମ୍ ସନ୍ଦେଶ ପର୍ଯ୍ୟନ୍ତ ମିଠା; ବରା-ପିଆଜି ଠାରୁ ଆରମ୍ଭ କରି ମିକ୍ସଚର ପର୍ଯ୍ୟନ୍ତ ସବୁ ପ୍ରକାରର ଖାରା, ସିଙ୍ଗଲ ଚାଲୁ ଚା' ଠାରୁ ଆରମ୍ଭ କରି ଫୁଲ୍‌ପେଗ୍ ପର୍ଯ୍ୟନ୍ତ ସବୁ ପ୍ରକାରର ପାନୀୟ ତଥା ପିଲାଙ୍କର ଦରକାର ଅନୁସାରେ ପ୍ରାଥମିକ ସ୍ତରରୁ କଲେଜଯାକେ ନାନା ପ୍ରକାରର ପାଠ ସରଞ୍ଜାମ, ସବୁ ମିଳେ ଏ ଛୋଟିଆ ବଜାରରେ । ବେକାର ଓ ସାକାର, ସମସ୍ତଙ୍କର ଅହର୍ନିଶ ଭିଡ଼ ଜମିଥାଏ ଏ ତୋଟାରେ ।

Digitized by srujanika@gmail.com

ବୋଧହୁଏ ରାମଙ୍କ ମୁକ୍ତିପାଇଁ । ମହାବିଦ୍ୟାଳୟଟିଏ ହୋଇ ଗାଁର ଚେହେରା ବଦଳି ଗଲାଣି କେତେ ବର୍ଷ ହେଲା । ଲୋକଙ୍କର ଚଳଣି ବଦଳି ଗଲାଣି । ପର୍ଯ୍ୟାୟକ୍ରମେ ଧୋତିରୁ ଲୁଙ୍ଗି, ଲୁଙ୍ଗିରୁ ଫୁଲ ପେଣ୍ଟ ଓ ଶେଷରେ ଆଫଗାନୀ ପାଇଜାମା ଓ କୁର୍ତ୍ତା ଏବେ ଏ ଗାଁର ଭୂଷା । ପୁଅ ଝିଅ ବାରି ହୁଅନ୍ତି ନାହିଁ । ଗାଁକୁ ଆସିଲେ ମନେହୁଏ କିପରି ଏକ ଅଜଣା ଜାଗାକୁ ଗଲାପରି । ଗୟାଦାଦାର ସେ ଆଦର ସମ୍ଭାଷଣ ନାହିଁ କି ରାମା କକେଇଙ୍କର ସେ ସରଳିଆ ଆଲିଙ୍ଗନ ନାହିଁ । ସବୁ ଯେପରି ଖାପଛଡ଼ା । ଏ ସବୁ କୃତ୍ରିମତା ଭିତରେ ନୂଆବୋଉଙ୍କର ସେ କୃତ୍ରିମ ଲାଜ ମଧ ହଜିଗଲାଣି—"ଏତେ କଣ କୃତ୍ରିମତା ?" ନାଁରେ ।

ବହୁ ପୁରାତନ ଯୁଗରେ ଗାଁରେ ଥିଲା ଗୋଟିଏ ଚାଟଶାଳି—ମାଟିବଂଶ ଅବଧାନଙ୍କ ତତ୍ତ୍ୱାବଧାନରେ, ତା ଉପରକୁ ଗୋଟିଏ ସଂସ୍କୃତ ଟୋଲ୍ । କେତେକ କୃତବିଦ୍ୟ ଗ୍ରାମବାସୀଙ୍କ ଉଦ୍‌ଯୋଗରେ, ଉଚ୍ଚ ପ୍ରାଥମିକ, ମାଧମିକ, ଉଚ୍ଚ ଇଂରାଜୀ ଓ ପରେ ମହାବିଦ୍ୟାଳୟ, କ୍ରମୋନ୍ନତିର ଧାରାରେ, ଗୋଟିଏ ପରିସର ମଧରେ ଗଢ଼ି ଉଠିଛି ମାତ୍ର ଏଇ କେତୋଟି ଦଶନ୍ଧି ଭିତରେ । ଏହି ମହାବିଦ୍ୟାଳୟ ପରିସର ତଥା ମୁକ୍ତିରାମ ତୋଟାର ବଜାର ହୋଇଛି ଆଧୁନିକ ଗ୍ରାମବାସୀଙ୍କ ମନ୍ଦିର ପ୍ରାଙ୍ଗଣ, ମୁକ୍ତିର ଦୁଆର—ପୁରାତନ ଗ୍ରାମ ଦେବୀ ଓ ଦେବତା ମନ୍ଦିର ପରିତ୍ୟକ୍ତ, ଉପେକ୍ଷିତ ।

ଏଇଲେ ତ ଶିକ୍ଷିତ ବେକାରଙ୍କର ଅଭାବ ନାହିଁ । ଥିଲାବାଲା ଲୋକେ ଦେଶିଆ ପାଠ ସାରି ଚାକିରୀ ଆଶାରେ ବିଦେଶରୁ ମଧ ପାଠ ଶେଷ କରି ଆସି ବସିଛନ୍ତି । ସେଇମାନଙ୍କ ଭିତରୁ କେତେଜଣଙ୍କୁ ନେଇ ଏକ କଲେଜ ଖୋଲି ଦେବାରେ କୌଣସି ଅସୁବିଧା ନାହିଁ ।

ସ୍ୱଦେଶୀ ଆନ୍ଦୋଳନର ଆବଶ୍ୟକତା ନ ଥିଲାବେଳେ, ବିଦେଶୀ ଜିନିଷ ପ୍ରତି ଆଗ୍ରହ ଜମୁଥିବା ବେଳେ ବିଦେଶ ବୁଲି ଆସିଥିବା ଲୋକଙ୍କ ପ୍ରତି ସାମୂହିକ ଆକର୍ଷଣ ବିଶେଷ ଭାବରେ ରହିବା କଥା—ଏହାକୁ ଯେ ଯେତେ ହୀନତାବୋଧ କହୁନା କାହିଁକି—। ଏମାନଙ୍କ ମଧରୁ ଜଣେ ଦୁଇଜଣ ରହିଲେ ମହାବିଦ୍ୟାଳୟ ପ୍ରତି ଲୋକଙ୍କ ଦୃଷ୍ଟି ଆକର୍ଷିତ ହେବ, ଛାତ୍ର ସଂଖ୍ୟା ବଢ଼ିବ, ମହାବିଦ୍ୟାଳୟ ପାଇଁ ଚାନ୍ଦାର ମାତ୍ରା ବଢ଼ିବ; ଛୋଟିଆ ବଜାରରେ ବିଦେଶୀ ମାଲର କାରବାର ମଧ ବଢ଼ିବ, ତେଣୁ ସବୁରି ସମର୍ଥନ ବିଦେଶୀ ପାଠୁଆଙ୍କ ଆଡ଼କୁ ।

କଲେଜ ମ୍ୟାନେଜିଂ କମିଟିରେ ଏକମାତ୍ର ବୃଦ୍ଧ ସଭ୍ୟ ସଂସ୍କୃତ ପଣ୍ଡିତ ରଥ ମହାଶୟ କହିଲେ—"ହଇରେ ପୁଅ ଖାଲି ବିଲାତ ଗଲେ କଣ ଜ୍ଞାନ

Digitized by srujanika@gmail.com

ବଢ଼ିଯିବ କିରେ ? ଏଠିତ ଏତେ ପଢ଼ିଲ, ପୁଣି ବିଦେଶରେ ଛ ମାସ ବର୍ଷେ ପଢ଼ିଲେ କ'ଣ ସବୁ ପଣ୍ଡିତ ହୋଇଯିବେ ନା ଏଠିକା ମେଧାବୀ ଛାତ୍ରଙ୍କୁ ଟପି ଯିବେ ? ଦୂରତଃ ଶୋଭତେ ମୂର୍ଖ ଲମ୍ବସାଟ ପଟାବୃତ । ଖାଲି ଫମ୍ପା ମାଠିଆ ରେ, ଖାଲି ଫମ୍ପା ମାଠିଆ ।''

''ଅଚ୍ଛା, ଟି.ଭି. ରେ ଦେଖୁନ ସେ ଫମ୍ପା ମାଠିଆରୁ କେଉଁଲୀ ମାଷ୍ଟ୍ରେ କିପରି ସ୍ୱର ଓ ତାଳ ବାହାର କରୁଛନ୍ତି, ଆପଣଙ୍କ ମର୍ଦ୍ଦଳ ସହିତ ରୀତିମତ କମ୍ପିଟେସନ୍, ଦକ୍ଷିଣୀ ବାଜା ବା—'' ।

ଯୁବକ ସେକ୍ରେଟାରୀ ଶ୍ରୀଯୁକ୍ତ ରମେଶ ଚନ୍ଦ୍ର ମାଝିଙ୍କ ଉତ୍ତରରେ ଏକ ହସର ଢେଉ ଖେଳିଗଲା ।

''ହଉରେ ପୁଅ, ଯେତେବେଳେ ଗାଁରେ ଦକ୍ଷିଣୀ ବାଜା ସହ ଇଂରାଜୀ ନାଚ ହେବ ତେବେ ଯାଇ ବୁଝିବନା ଏ ବାଜାର ମଜା ।'' ଭବିଷ୍ୟବାଣୀ ଭଳି କହି ପକାଇଲେ ବୁଢ଼ା ପଣ୍ଡିତ ରଥଶର୍ମା ।

ବିଲାତ ଫେରନ୍ତା ପ୍ରୌଢ଼ ଲୋକଟି ରହିବ ଅଧକ୍ଷ ଭାବରେ, ସେକ୍ରେଟାରୀ ମାଝି ବାବୁଙ୍କ ପ୍ରସ୍ତାବ ବହୁ ମତରେ ଗୃହୀତ ହେଲା ।

ରମେଶ ମାଝି ଗାଁର ଜଣେ ଉଦୀୟମାନ ଯୁବକ । ଇଂରାଜୀ ଅନର୍ସ ରଖି, କଟକ ରେଭେନ୍ସା କଲେଜରୁ ବି.ଏ. ପାସ କରିଛନ୍ତି । ଘରେ ଅଚଳାଚଳ ସମ୍ପତ୍ତି । ବାପା ଜେଜେ ତିନି ପୁରୁଷରୁ ବ୍ୟବସାୟ ବଣିଜ । ଲୋକେ କହନ୍ତି ତାଙ୍କ ଗାଆନ୍ତ ବାପାଙ୍କ ଅମଳରେ ମଧ୍ୟପ୍ରଦେଶ ରାଏପୁରରୁ ସମ୍ବଲପୁର ଯାଏ କୁଆଡ଼େ ଧାଡ଼ି ବାନ୍ଧି ଶଗଡ଼ ଗାଡ଼ିରେ ମାଲ ସରବରାହ ଲାଗିଥାଏ । ଏବେ ବି ମାଝିବାବୁଙ୍କ ବଂଶଧରମାନେ ରାଏପୁରରେ ଚିରସ୍ଥାୟୀ ବାସିନ୍ଦା—ଏହା ହିଁ ଏହାର ପ୍ରମାଣ ।

ଏତେ ସମ୍ପତ୍ତି ଥାଉ ଥାଉ ପୁଅ ଗୋଲାମି କରିବ ? ରମେଶ ବାବୁଙ୍କର ମଧ ଗାଁ ପାଇଁ କିଛି କରିବାର ଇଛା । ଗାଁର ପୁରୁଣା ମାନ୍ୟଗଣ୍ୟ ସମାଜସେବୀ ବୃଦ୍ଧ ଜଗନ୍ନାଥ ବାବୁଙ୍କ ଠାରୁ ପିଲାବେଳୁ ସେ ଏ ବାବଦରେ ପ୍ରେରଣା ପାଇଛନ୍ତି । ପୁରାତନ ସଂସ୍କାର ସହିତ ଆଧୁନିକ ଇଂରାଜୀ ସଭ୍ୟତାର ଏକ ଅପୂର୍ବ ସମନ୍ୱୟ ଘଟିଛି ତାଙ୍କଠାରେ । ସେ ପୁଣି ବର୍ତ୍ତମାନ କଲେଜ ମ୍ୟାନେଜିଂ କମିଟିର ସମ୍ପାଦକ । ତାଙ୍କରି ସୁପାରିଶରେ ବାବୁ ରାଜକିଶୋର ମହାପାତ୍ର ମହାବିଦ୍ୟାଳୟର ଅଧକ୍ଷ ପଦରେ ଅଭିଷିକ୍ତ ହେବେ ନାହିଁ ତ ଆଉ କିଏ ହେବ ?

Digitized by srujanika@gmail.com

ଶ୍ରୀଯୁକ୍ତ ରାଜକିଶୋର ଯେ କେବଳ ବିଲାତରେ କିଛିକାଳ ପାଠ ପଢ଼ି A ଠାରୁ Z ପର୍ଯ୍ୟନ୍ତ ବିଭିନ୍ନ ପ୍ରକାରର ମିଶ୍ରଣ ନିୟମାନୁସାରେ ଯେ କେତେକ ବିଶେଷ ଡ଼ିଗ୍ରୀ ଧାରଣ କରିଛନ୍ତି ତା'ନୁହେଁ, ସମଗ୍ର ୟୁରୋପ ଭ୍ରମଣର ଅଭିଜ୍ଞତା ତାଙ୍କର ରହିଛି । କ୍ଲାସରୁମ୍‌ରେ ଛାତ୍ରଛାତ୍ରୀଙ୍କ ମନକୁ ଇଂରାଜୀ ସାହିତ୍ୟର ଦାର୍ଶନିକ ବିଶ୍ଳେଷଣାତ୍ମକ ଚିନ୍ତାଧାରାର କ୍ଳିଷ୍ଟତା ଭିତରୁ ଲାଘବ କରିବା ପାଇଁ ମି: ମହାପାତ୍ର ଯେତେବେଳେ ତାଙ୍କ ପ୍ୟାରିସ ଭ୍ରମଣ ସଂକ୍ରାନ୍ତୀୟ ପଚାଶ ବର୍ଷ ବୟସ ଅତିକ୍ରାନ୍ତା ମହିଳା ମିସେସ ହାରିସନ୍‌ଙ୍କ ସହିତ ଶୀତାତପ-ନିୟନ୍ତ୍ରିତ ରେଳଗାଡ଼ିରେ ଏକାନ୍ତ ଭ୍ରମଣ କଥା ବର୍ଣ୍ଣନା କରିବାକୁ ଆରମ୍ଭ କରନ୍ତି, ତାହା ଛାତ୍ରଛାତ୍ରୀଙ୍କ ମନ ମଧ୍ୟରେ ଏପରି ରସର ପ୍ଲାବନ କରି ଦିଏ ଯେ, ଆଗାମୀ କେତେଦିନ ଧରି ମି: ମହାପାତ୍ର ତାଙ୍କ କ୍ଲାସରେ ଛାତ୍ରଛାତ୍ରୀଙ୍କ ନାନା ରସଶାଣିତ ପ୍ରଶ୍ନବାଣରେ ବିମୁଗ୍ଧ ଜର୍ଜର ହୋଇପଡ଼ନ୍ତି । ଫଳରେ ମି: ମହାପାତ୍ରଙ୍କୁ କଷ୍ଟସାଧ୍ୟ ଇଂରାଜୀ ସାହିତ୍ୟ ଓ ଦର୍ଶନର ବିଶ୍ଳେଷଣ କରିବାକୁ ପଡ଼େନାହିଁ କି ପିଲାମାନଙ୍କୁ ମି: ମହାପାତ୍ରଙ୍କ ପ୍ରବଚନର ଉଷ୍ମତାରେ ଛଟପଟ ହୋଇ ଭ୍ରୂକୁଞ୍ଚନ ମଧ କରିବାକୁ ପଡ଼େ ନାହିଁ ।

ସବୁଠୁ ବେଶୀ ଆକର୍ଷଣର କଥା ହେଉଛି ମି: ମହାପାତ୍ର ଏହି ଆସର ଜମୁଥିବା ଦିନ କେତେଟାରେ, ତାଙ୍କର ସଯତ୍ନସାଇତା ,ବିଦେଶଯାତ୍ରା ବେଳର ଅଣ୍ଟା ଉପରକୁ ଉଠାଇ ରଖିବା ପାଇଁ ଉଦ୍ଦିଷ୍ଟ ପିଠିପଟ ଦେଇ କାନ୍ଧ ଉପରକୁ ଛକି ପଡ଼ିଥିବା ବେଲ୍‌ଟ ଲଗା ଢିଲା ପତ୍‌ଲୁନ,ଇଂଲିସଷ୍ଟାନୀ ଏବଂ ତା' ସାଙ୍ଗକୁ ଚୋପାଛାଡ଼ି ଛଉକା ହୋଇ ଯାଇଥିବା ବାଟାଙ୍କ ଆମ୍ଦାସଡ଼ର 'ଜାପାନୀଜୁତା' ପରିଧାନ ଓ ଓରିଜିନାଲ (ତାଙ୍କଭାଷାରେ) ପ୍ୟାରିସ୍ 'ଇଣ୍ଟିମେଟ୍' ଅତର, ସାରା ମହାବିଦ୍ୟାଳୟର ବାତାବରଣକୁ ମହକମୟ କରିପକାନ୍ତି ।

ୟୁବ ସେକ୍ରେଟାରୀ ରମେଶ ବାବୁଙ୍କ ଇଂଲିସ୍ ଅନର୍ସର ଯୋଗ୍ୟତା ସାଙ୍ଗକୁ ମି: ମହାପାତ୍ରଙ୍କ ଇଂରାଜୀ ଅଧ୍ୟାପକତ୍ୱ ଓ ଫରାସୀ ସାଜସଜାର ଏକ ମହନୀୟ ସମନ୍ୱୟ ଘଟାଇଲା ସୁଦୂର ଅଖ୍ୟାତପଲ୍ଲୀ (ଅଧୁନା ପ୍ରଖ୍ୟାତ ସହର) ମୂଳବସତିରେ ଏକ ଅପୂର୍ବ ଶିହରଣ । ମି: ମହାପାତ୍ରଙ୍କର ନାମକୁ ସାର୍ଥକ କରି ରାଜକୀୟ ଠାଣି ଓ କୈଶୋରୀୟ ବ୍ୟବହାର ଦିନକୁ ଦିନ, ଏକଦା ଏହି ଅଖ୍ୟାତ ପଲ୍ଲୀର ଯେଉଁଠି ବହୁ ଝିଙ୍କାରିଙ୍କର ଗୁଞ୍ଜନ ଶୁଭୁଥିଲା ସେଠାରେ ଶୁଭିବାକୁ ଆରମ୍ଭ ହେଲା ନାନା ଲୋକଙ୍କର ନାନା କଥାର ଫୁସଫୁସଣ ।

ଗ୍ରାମର କିଶୋରମାନଙ୍କ ମନରେ ଏବେବି ସେହି ପୁରୁଣା ସାମାଜିକ ଚଳଣିର ପ୍ରଭାବ ବଂଶାନୁଗତିକ ଧାରାରେ ସଂସ୍କାର ଭାବରେ ଜୀବିତ । ଫରାସୀ କାଇଦାରେ ମିଳାମିଶାର ଆନନ୍ଦକୁ ସେମାନେ ସହଜରେ ଗ୍ରହଣ କରିପାରୁ ନାହାନ୍ତି ।

Digitized by srujanika@gmail.com

ଅର୍ଦ୍ଧରାତ୍ରୀର ଦ୍ୱୈତ୍ୟନୃତ୍ୟର ମଧୁର କ୍ୟାସେଟର ତାନ ସହିତ ନାରୀର ଖିଲିଖିଲି ହସ କିଶୋର ପ୍ରାଣରେ ଅନେକ ସମୟରେ ଚହଳ ସୃଷ୍ଟି କରୁଥିଲେ ମଧ୍ୟ ବହୁକାଳର ସାମାଜିକ ଆଚାର ବ୍ୟବହାର ସଂସ୍କାର ଯାହା ଧମନୀରେ ପ୍ରବାହିତ ମିଃ ମହାପାତ୍ରଙ୍କ ଅତ୍ୟାଧୁନିକ ରାଜକୈଶୋରୀୟ କାର୍ଯ୍ୟକଳାପ ବିରୁଦ୍ଧରେ ତାହା ବିଦ୍ରୋହ ମଧ୍ୟ ଘୋଷଣା କରୁଛି । ଫଳରେ ମିଃ ମହାପାତ୍ରଙ୍କର ଏ ମଧ୍ୟରେ ତିନି ତିନିଟା ସାହିରୁ ବାସଗୃହ ପରିବର୍ତ୍ତନ ହୋଇସାରିଲାଣି ।

ଏତେକଥା ଭିତରେ ମଧ୍ୟ ରମେଶବାବୁଙ୍କ ସହିତ ମିଃ ମହାପାତ୍ରଙ୍କର ଘନିଷ୍ଠତାରେ ବିଶେଷ କିଛି ଘଂଟା ପଡ଼ିବାର ଲକ୍ଷ୍ୟ କରାଯାଉନି । ବିଲାତି ମଦର ସ୍ୱାଦର କାରଣ ହୁଏତ ଏହା ବୋଲି ଲୋକେ ମନେ କରନ୍ତି । ମାଝିବାବୁଙ୍କର ପ୍ରଭାବ ସ୍ଥାନୀୟ ଲୋକଙ୍କ ଉପରେ ଅନେକ ବେଶି, ଗ୍ରାମରେ ଚିରକାଳର ପାରିବାରିକ ପ୍ରାଧାନ୍ୟ ପାଇଁ । ଲୋକେ ଭରସି କିଛି ନ କହିଲେ ମଧ୍ୟ, ସ୍ଥାନୀୟ କିଶୋରମାନଙ୍କ ଜରିଆରେ ନାନା ପ୍ରକାର ହଇରାଣ ହରକତ୍, ରାତି ଅଧିଆ ଚଢ଼ାଉ ରୀତିମତ ଚାଲିଥାଏ । ମିଃ ମହାପାତ୍ରଙ୍କର ବସା ପରିବର୍ତ୍ତନ ଏହିସବୁ କାରଣରୁ ହେଲେ ମଧ୍ୟ, ବସାଘରର ଅନୁପଯୁକ୍ତତାର କାରଣ ଯୋରସୋରରେ ପ୍ରଚାର ହେଉଥାଏ, ମହାପାତ୍ର ସାର୍‌ଙ୍କର ନିକଟତମ ଛାତ୍ରଛାତ୍ରୀଙ୍କ ଦ୍ୱାରା ।

ମିଃ ମହାପାତ୍ରଙ୍କର କେତେକ ବିଶେଷ ଗୁଣ ମଧ୍ୟ ଥାଏ । ଯେଉଁ ଛାତ୍ରଛାତ୍ରୀ ତାଙ୍କର ନିକଟତମ ହୁଅନ୍ତି ସେମାନଙ୍କର ପରୀକ୍ଷା ଘାଟି ପାରି ହେବାର କୌଣସି ଅସୁବିଧା ହୁଏ ନାହିଁ ସେ ଯେଉଁ ମାନର ଛାତ୍ର ହୁଅନ୍ତୁନା କାହିଁକି । ମାତ୍ର କୌଣସି କାରଣରୁ ମିଃ ମହାପାତ୍ରଙ୍କ ବିରାଗଭାଜନ ହେଲେ ପରୀକ୍ଷା ବୈତରଣୀ ପାର ହେବା ତିନି ଜନ୍ମରେ ମଧ୍ୟ ସମ୍ଭବ ନୁହେଁ । ତେଣୁ ଛାତ୍ରମାନଙ୍କର ଯାହା ମନସ୍ତତ୍ୱ, ସେଥିରେ ପୁଣି କେଉଁ ଅଭିଭାବକ ମିଃ ମହାପାତ୍ରଙ୍କ ଅସାମାଜିକ କାର୍ଯ୍ୟର ପ୍ରତିବାଦ କରିବେ ? ଏସବୁ ଶୁଣି ପଣ୍ଡିତେ ଥରେ ନଈକୂଳରେ, ଶୀତଦିନିଆ ଖରା ପୁଉଁ ପୁଉଁ, ଖରାକୁ ପିଠି କରି କହିଲେ—'ନାଚୁଚଟି ପିଲେ, ଫମ୍ପା ମାଠିଆ ନିନାଦିତ ତାଳରେ ?' କଥାଟା ଥିଲା ରମେଶ ବାବୁଙ୍କ ଉଦ୍ଦେଶ୍ୟରେ । ଅଣ୍ଟାଏ ପାଣିରେ ବୁଡ଼ ମାରୁଥିଲେ ମାଝିବାବୁ ।

ମାଝିବାବୁ କୂଳକୁ ଉଠି ଓଦା ଲୁଗା ପାଲଟୁ ପାଲଟୁ କହିଲେ—ଅଜ୍ଞା, ମିତ୍ର ଲାଭ ଗଳ୍ପଗୁଛର ସେହି ବୃଦ୍ଧ କପୋତ କଥା ନ ଶୁଣି, କପୋତ ଦଳକୁ ଯେଉଁ ଦୁର୍ଦ୍ଦଶା ଘୋଟିଲା, ଆଜି ଆମ ଗାଁର ଅବସ୍ଥା ତାହା । ମୁଁ ମୋର ଭୁଲ୍ ବୁଝି ପାରୁଛି । ଆଜିର ଘଟଣା ଶୁଣିଲଣି ନା ?

Digitized by srujanika@gmail.com

ପାକୁଆ ପାଟିରୁ ଫସ୍ କରି ପବନ ପୁଳାଏ ବାହାର କରି ହସି ଉଠିଲେ ପଣ୍ଡିତେ ।—କ'ଣ ହେଲା ? ଆଉ କ'ଣ କିଛି ନୂଆ ପ୍ରକାରର ଅଛି କି ?

—ଅଜ୍ଞା ! ଆଜି ଭୋ'ରୁ ଭୋ'ରୁ ନାହାକ ସାଇ ଆଡ଼େ ଗଲାବେଳକୁ ରାଜୁ ବାବୁ ତାଙ୍କ ଗ୍ରୀନ୍ ମଡେଲ ରାଲେଟିକୁ ଠେଲି ଠେଲି କାଦୁଅ ପଙ୍କରେ ଲଟପଟ ହୋଇ ଚାଲିଛନ୍ତି ଘରମୁହାଁ । ମୁଁ କାବା । ପଚାରିଲି, ଏ କ'ଣ ମହାପାତ୍ର ସାର୍, ଆପଣଙ୍କର ଏ କି ଅବସ୍ଥା ?

ମହାପାତ୍ର ସାର୍ ବଡ଼ ବିମର୍ଷ । କହିଲେ ଦୁର୍ଯୋଗ, ବିଲେଇଟାକୁ ବଞ୍ଚାଇବାକୁ ଯାଇ ଦୋ'ସମାଳିର ନଇନ୍‌ଯୋରି କାଦୁଅରେ ପଡ଼ିଗଲି ।

—ଆପଣ ଏଡ଼େ ଭୋ'ରରୁ ଯାଇଥିଲେ କେଉଁଆଡ଼େ ?

—କାଲି ସୁହାସିନୀ ଆସିଥିଲା ଯେ, 'ତାକୁ ଭୋ'ର ବସ୍‌ରେ ଛାଡ଼ିବାକୁ ଯାଇଥିଲି ହାଇ-ୱେକୁ । ଫେରିଲା ବେଳକୁ ଏ ଦୁର୍ଘଟଣା ।

ସୁହାସିନୀଙ୍କ ସହିତ ମାଝିବାବୁଙ୍କର, ମି: ମହାପାତ୍ରଙ୍କ ମାର୍ଫତ ବେଶ୍ ଜଣା ଶୁଣା । ସେ ମି: ମହାପାତ୍ରଙ୍କର ସହଧର୍ମିଣୀଙ୍କର କେଉଁ ଏକ ଦୂରସମ୍ପର୍କୀୟା ଭଉଣୀ । ଉଚ୍ଚ ଶିକ୍ଷିତା ଉଚ୍ଚ ପଦାଧିକାରୀ ମଧ୍ୟ । ସମୟ ସମୟରେ ଭଗ୍ନୀପତିଙ୍କ ସୁଖ ସୁବିଧା ବୁଝିବାକୁ ବୁଲି ଆସନ୍ତି ଓ ସେ ଅବସରରେ ମାଝିବାବୁଙ୍କର ଯାହା କିଛି ଜାନ୍ ପହେଚାନ୍ ।

ମି: ମହାପାତ୍ର, ଅତ୍ୟନ୍ତ ଏକ ମାମୁଲି ଘଟଣା ଭାବରେ ଦୁର୍ଘଟଣା ବିଷୟ କହୁଥିଲା ବେଳେ କିନ୍ତୁ ତାଙ୍କ ମୁହଁ ଉପରେ ଏକ ଭୟବିହ୍ୱଳତାର ଛାପ ମାଝିବାବୁଙ୍କ ଆଖିରୁ ଏଡ଼ାଇ ଯାଇ ନ ଥିଲା । ହଠାତ୍ ମି: ମହାପାତ୍ରଙ୍କ ଡାହାଣ କଟି ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ସୁଗୋଲ, ଚିକ୍‌କଣ ଲୋମବିହିନ ହାତର ସେ ଅଂଶରେ ଶୋଭା ପାଉଥିବା ସ୍ୱର୍ଣ୍ଣାଭ ଓମେଗା ଘଡ଼ିଟି ଦିଶୁ ନାହିଁ । ମି. ମହାପାତ୍ର କହିଲେ ଅତ୍ୟନ୍ତ ବିମର୍ଷ ଭାବରେ 'ସେହି ନଇନଯୋରୀ ପଙ୍କରେ କୋଉଠି ରହିଗଲା ।'

ମାଝିବାବୁଙ୍କ ମନରେ ଅତ୍ୟନ୍ତ ଦୁଃଖ—ଆହା ବିଚରା.... !

ରଥଶର୍ମା ପାକୁଆ ପାଟିକୁ ପାନଖିଲରୁ ଗୁଣ୍ଡପାନ କୋରି କୋରି ପକାଉଥା'ନ୍ତି ଓ ମୁରୁକି ମୁରୁକି ହସୁଥା'ନ୍ତି । ଖରା ଟିକେ ଟାଣ ହୋଇ ଯାଇଥିବାରୁ ପଣ୍ଡିତେ ପାଚିଲା ଗାମୁଛାଟାକୁ ପିଠିକୁ ପକେଇ ବାଉଁଶବୁଦା ଛାଇକୁ ଟିକେ ପିଢ଼ା ବୁଲେଇ ନେଲେ । ଦୁଷ୍ଟ ଚମେଇ ନେଉଳଟା କୋଉଠି ଥିଲା ସରସର ହେଇ ପଳେଇଲା । ଧେତ୍ ଶଳା !

ରମେଶ ବାବୁ କହି ଚାଲିଲେ—ମହାପାତ୍ର ସାର୍‌ଙ୍କୁ ବୋଧଦେଇ ଚାଲିଲି ଆଗକୁ । ନାହାକସାଇ ଦୋ'ସମାଳି ମୁଣ୍ଡରେ 'କେତେ ପିଲା ଠିଆ ହୋଇ କ'ଣ ସବୁ ଚୁପ୍‌ଚାପ୍ ଆଲୋଚନା କରୁଥିଲେ । ମୋତେ ଦେଖି ତାଙ୍କ ଭିତରୁ ନାରଣ

Digitized by srujanika@gmail.com

ଟିକେ ସାହସ କରି ଆଗେଇ ଆସି କହିଲା—ମାଝିଦାଦା, ତୁମେ ସେ ମହାପାତ୍ର ବାବୁଙ୍କୁ ଅନ୍ତତଃ ଆମ ଗାଁରେ ରହିବାକୁ ମନା କରିଦିଅ। କାଲି ରାତିରେ ତାଙ୍କ ବସାରେ ଯାହା ସବୁ.....ଘରକୁ ଘର ଲାଗିଛି......ଝରକା ଯାକ ମେଲା ରଖି ସେ ଯେଉଁ କାଣ୍ଡ......ମା, ଭଉଣୀ ନେଇ ଘର କରି ରହିଛୁ, କେତେ ସହିବୁ ? ଆଜି ଆମେ ତାଙ୍କୁ ପାନେ ଦେଇଛୁ। ଭୋ'ରୁ ଭୋ'ରୁ ଯାଉଥିଲା ସେ ଟୋକୀକୁ ଛାଡ଼ିବାକୁ। ତା' ଘଡ଼ିଟି ଛଡ଼େଇ ରଖିଛୁ। ଦୁଇଶହ ଟଙ୍କା ଦେବ ଓ ସାତ ଦିନ ଭିତରେ ଗାଁ ଛାଡ଼ିବ।

—ଅଜ୍ଞା, ମହାପାତ୍ରଙ୍କ ଦୁର୍ଦ୍ଦଶାର କାରଣ ବୁଝିଗଲି। ପିଲାଙ୍କୁ କିଛି ଟଙ୍କା ଦେଇ ଘଡ଼ିଟି ଆଣି ମହାପାତ୍ରଙ୍କୁ ଦେଲି। ନଚେତ୍ ସେ ପୁଣି ଯେଉଁ ଲୋକ, ପିଲାଗୁଡ଼ାଙ୍କୁ ଅଯଥା ଚୋରୀ କେଶ୍‌ରେ ପକାଇ ଦେବାର ସମ୍ଭାବନା ଅଛି। ଏସବୁ ଘଟଣା ମୁଁ ଜାଣି ଯାଇଥିବାରୁ ସେ ଅଧିକ ବିବ୍ରତ ହୋଇପଡ଼ିଲା ଓ ସଙ୍ଗେ ସଙ୍ଗେ ବିସ୍ତରା ବାନ୍ଧି ତିିଆର୍ ଗାଁ ଛାଡ଼ିବାକୁ। ଆଜିଠୁ ସେ ଛୁଟିରେ ଯିବ। ପରେ ଅନ୍ୟଠି ଘର ଠିକଣା କରି ଜିନିଷପତ୍ର ନେଇଯିବ।

ପଣ୍ଡିତେ ଯୋରରେ ଏକ ଫୁତ୍କାର ମାରି ହସି ହସି କହିଲେ 'ତୁ ଜାଣିନୁ। ଲାଠିକଟା ଗାଁର ଦାମ ମହାପାତ୍ରଙ୍କ ପୁଅଟି ସିଏ। ତାର ବିଲାତ ଯିବାର କାରଣ କ'ଣ ଜାଣୁ ? ଏଇମିତି ଏଇମିତି ଏକ କାଣ୍ଡ। ଗାଁ ଲୋକେ ପିଟି ପିଟି କୂଅରେ ପକାଇ ଦେଇଥିଲେ। ତା' ପରଦିନ ତାଙ୍କ ମୂଲିଆ ତାକୁ କୂଅରୁ ବାହାର କଲେ। ମରୁ ମରୁ ବଞ୍ଚିଗଲା। ଲାଜରେ କାହାକୁ ମୁହଁ ଦେଖାଇବ ? ବାପର ତ ପଇସାର ଅଭାବ ନାହିଁ। ସାଙ୍ଗେ ସାଙ୍ଗେ କଲିକତା ପଠାଇଦେଲା—ସେଠୁ ବିଲାତ। ଚିକିତ୍ସା ହେବାକୁ ଗଲା କି ପଢ଼ିବାକୁ ଗଲା ଭଗବାନ ଜାଣନ୍ତି। ଏତେଦିନ ପରେ ବି ସେ ପ୍ରକୃତି ବଦଳିଲା ନାହିଁ; ଯଦିଓ ଏହା ଭିତରେ ପ୍ରକୃତି ନିଜେ କେତେ ବଦଳି ଗଲାଣି; ସେ ମୂଳବସତି ଆଉ ନାହିଁ। ହେଲେ ଜାଣିନୁକି ପୁଅ ''ଘୁଷୁରି ପ୍ରକୃତି ପଙ୍କେ ଲୋଟେ''।

''ମଣିଷ ପ୍ରକୃତି......'' ରମେଶବାବୁ ପାଦ ପୂରଣ କରିବାକୁ ଯାଉଛନ୍ତି, ହଠାତ୍ ପ୍ରଶାନ୍ତ ଧଇଁସଇଁ ହୋଇ ଆସି ଡାକ ପକାଇଲା—ମାଝି ଦାଦା, ଆପଣଙ୍କୁ ମହାପାତ୍ର ସାର୍ ଡାକୁଛନ୍ତି, ଶୀଘ୍ର ଆସନ୍ତୁ।

ପାଦ ଅପୂରଣ ରହିଗଲା। ମାଝିବାବୁ କ୍ଷୀପ୍ର ପଦକ୍ଷେପରେ ନଈବନ୍ଧ ଉପରକୁ ଉଠିଗଲେ।

ପଣ୍ଡିତ ରଥଶର୍ମା ପାକୁଆ ପାଟିକୁ ମେଲାଇ ଖାଲି ହସୁଥା'ନ୍ତି।

* 'ଶତଦ୍ରୁ' ପୂଜାସଂଖ୍ୟା—୧୯୯୨

Digitized by srujanika@gmail.com

# ......ତପସ୍ୱିନୀ :

ଭୋ'ରୁ କୁଆ କା' କଲାବେଳକୁ ମନମୋହନ ବାବୁଙ୍କ ନିତ୍ୟକର୍ମ ସରି ଯାଇଥାଏ । ଜାଙ୍ଗୁଲ ଜାଙ୍ଗୁଲ ରାତିରୁ ଦୁଇମୁଣ୍ଡରେ ପିତଳ ମୁଦିଆ ଦିଆ ଦେଢ଼ଫୁଟିଆ ବେତବାଡ଼ି ଖଣ୍ଡକ ଧରି, ଉଜ୍ଜ୍ୱଳ ଲାଲ ରଙ୍ଗର ଟି-ସାର୍ଟଟାକୁ ଧଳା ଫୁଲ୍ ପେଣ୍ଟ ଭିତରେ ଅଣ୍ଟାଠୁ ତଳକୁ ଢାକି ଦେଇ, ପାଦରେ ଆକ୍ସନ୍-ସୁ ହଳକ ମଡ଼ାଇ, ମନମୋହନ ବାବୁ ପ୍ରାତଃ ଭ୍ରମଣରେ ବାହାରି ପଡ଼ନ୍ତି ମୁକ୍ତ-ବାୟୁ ସେବନ କରିବା ପାଇଁ । ତାଙ୍କର ଗନ୍ତବ୍ୟ-ମାର୍ଗ କିନ୍ତୁ ଏକ ନିରୋଳା ନିଛାଟିଆ ମାର୍ଗ, ତୁମୁଡ଼ି ବନ୍ଧର ''ସାପେଇ ନଈ'' ମଝିରେ ବାଡ଼ ପକାଇଥିବା 'ନୂଆ ବନ୍ଧ' ଆଡ଼କୁ ।

ତୁମୁଡ଼ି ବନ୍ଧ ବେସରକାରୀ କଲେଜଟିକୁ ସରକାର ହାତକୁ ନେବା ପରେ ପ୍ରଥମ ପ୍ରିନ୍ସିପାଲ ଭାବରେ ଦାୟିତ୍ୱ ନେବା ପରଦିନଠାରୁ ତାଙ୍କର ନିତ୍ୟ ନୈମିତ୍ତିକ ଦିବସର ପ୍ରଥମ କାର୍ଯ୍ୟ ହେଲା ଏହି ପ୍ରାତଃ ଭ୍ରମଣ ।

ମନମୋହନ ବାବୁ, ଯାହା ଶୁଣିବାକୁ ମିଳେ, ବଡ଼ ରସିକ । ବେଳେବେଳେ ଭଞ୍ଜୀୟ ଢାଞ୍ଚାରେ କାବ୍ୟ ରଚନା କରିବାକୁ ପ୍ରୟାସ ମଧ୍ୟ କରନ୍ତି । ତେଣୁ ପ୍ରାତଃ ଭ୍ରମଣ ସହିତ ପ୍ରକୃତିକୁ ଉପଭୋଗ କରିବାର ଦୁର୍ବାର ବାସନା ତାଙ୍କ ମନଗହନରେ ସର୍ବଦା କଅଁଳିଆ ହୋଇ ଥାଏ, ଯଦିଓ ତାଙ୍କର ବୟସ ଅବସର ନେବା ପାଇଁ ଧକ୍କା ଦେଲାଣି ।

ଗୋଜିଆ ମୁଣ୍ଡରେ ସବୁଜ ଟୋପି ମଡ଼େଇଥିବା ସାତଟି ପାହାଡ଼ର ଛନ୍ଦ ଭିତରୁ ଖସି ଆସିଛି ଏଇ ସାପେଇ ନଈ । ଯେଉଁଠି ଏ 'ନୂଆ ବନ୍ଧ'ର ସୃଷ୍ଟି, ତା'ରି ଅନତି ଦୂରରେ ସାପେଇ ନଈର ଧାର ପାହାଡ଼ ସନ୍ଧିକୁ କାଟି ପୂର୍ବରୁ ପଶ୍ଚିମ ଆଡ଼କୁ ବୋହି ଯାଉଛି ଓ ଧକ୍କା ଖାଉଛି ଚାରୋଟି ପାହାଡ଼ର କୋଳ ସନ୍ଧିରେ । ସେଠୁ ପୁଣି ପୂର୍ବକୁ ବାଙ୍କି 'ନୂଆ ବନ୍ଧ'ର ଘେରରେ ପଡ଼ି ନିଥର ହୋଇ ଯାଇଛି ତା'ର ଧାର । କେତେବା ସହିବ ଏତେ ପ୍ରାକୃତିକ ତଥା କୃତ୍ରିମ ବାଡ଼ର ଧକ୍କା ଏ ଶୀର୍ଣ୍ଣକାୟା ଚିରସ୍ରୋତା ସାପେଇ !!

Digitized by srujanika@gmail.com

ଏହି ସପ୍ତଶୀଳା ପାହାଡ଼ରୁ କେଉଁ ଏକ ଅଜଣା ଖୋଲରୁ ଝରି ଆସିଛି ଏହି ସାପେଇ ନଈ, ପ୍ରକୃତି କୋଳରେ ଅପରୂପ ଏକ ସମ୍ଭାର ସୃଷ୍ଟି କରିବାକୁ । କୂଳରେ ତା'ର ଆଦିବାସୀ କନ୍ଧ ଓ ଶଉରାମାନଙ୍କର ଛୋଟ ଛୋଟ ପଲ୍ଲୀ । ଘୋରିଷ, ଝୁଡ଼ଙ୍ଗ, ହଳଦି, ପାଳୁଅର ପଟାଳି ପଟାଳି କ୍ଷେତ ଭିତରେ କାର୍ଯ୍ୟରତ ଏହି ପ୍ରକୃତି ଲଳନାମାନଙ୍କର ଆନନ୍ଦ କଲ୍ଲୋଳ ସହିତ ମିଶି ସାପେଇ ନଈର ଜଳସ୍ରୋତ ଦ୍ୱାରା ଖଣ୍ଡ ଖଣ୍ଡ ପ୍ରସ୍ତରସ୍ତୂପ ଭିତରେ ସୃଷ୍ଟି କରୁଥିବା କଳକଳ ନିନାଦର ମିଶ୍ରରାଗ ସୃଷ୍ଟିକରେ ଶରୀରରେ ଅପୂର୍ବ ପୁଲକ ।

ମନମୋହନ ପ୍ରାତଃ ଭ୍ରମଣ ସକାଶେ ବାଛି ନେଇଛନ୍ତି ଏହି ମନମୁଗ୍ଧକର ସ୍ଥାନଟିକୁ । ଦୁଇ କିଲୋମିଟର ଚାଲି ଚାଲି ମନମୋହନ ବାବୁ ଯେତେବେଳେ ନୂଆ ବନ୍ଧ ପାଖରେ ପହଞ୍ଚନ୍ତି, ସେତେବେଳେ ହିରଣ୍ମୟଙ୍କ ଉଦୟରଙ୍ଗ ସବୁଜ ପାହାଡ଼ ମୁଣ୍ଡରେ ଧକ୍କାଖାଇ ବିଛାଡ଼ିହୋଇ ପ୍ରକ୍ଷେପିତ ହୁଏ ନୂଆବନ୍ଧ ସୃଷ୍ଟ ଜଳାଶୟ ଉପରେ । ପ୍ରାତଃ କର୍ମ ଶେଷ କରିବାକୁ ପଲ୍ଲୀ ଲଳନାମାନଙ୍କର କୋଳାହଳ ପ୍ରତିଧ୍ୱନୀ ସୃଷ୍ଟିକରେ ଶୈଳ କନ୍ଦରରେ, ଆଉ ସାପେଇ ନଈର କଳକଳ ନିନାଦ ସହିତ ମିଶି ଧ୍ୱନୀତ ହୁଏ ଏକ ଅନୁଦାତ୍ତ ରାଗିଣୀ । ରଙ୍ଗ ଓ ରାଗର ଏହି ଅପୂର୍ବ ମିଶ୍ରଣର ସରସତାରେ ମନମୋହନ ବାବୁ ବିହ୍ୱଳିତ ହୋଇପଡ଼ନ୍ତି ! ତିନିଶହରୁ ଚାରିଶହ ଫୁଟ ଲମ୍ବ ଏହି ବନ୍ଧ ଉପରେ ତାଙ୍କ ପାଦର ଗତି ମନ୍ଥର ହୋଇଯାଏ । ନୀଳ 'ଚ଼ଷମା ଭିତରେ ଆଖି ଡୋଳାଯୋଡ଼ିକ ଖୁବ୍ ଚଞ୍ଚଳ ହୋଇଉଠନ୍ତି ଚ଼ଳଚ଼ଞ୍ଚଳା ଆଦିବାସୀ ଯୁବତୀଙ୍କ ଅନାବରଣ ସୌନ୍ଦର୍ଯ୍ୟର ମାଦକତାକୁ ଦେଖି ସନ୍ତୋଷ ଲାଭ କରିବାକୁ । ମନମୋହନଙ୍କର ସମସ୍ତ ଶରୀରରେ ଯାତ ହୁଏ ବେପଥୁ । ସେ କେତେବେଳେ ଅଦୂରରେ ବନ୍ଧ ଉପରେ ତିଆରି ହୋଇଥିବା ସିମେଣ୍ଟ ବେଞ୍ଚ ଉପରେ ବସି ନିର୍ନିମେଷ ନୟନରେ ଅନାନ୍ତି ତ ପୁଣି କେତେବେଳେ ହଠାତ୍ ଉଠି କେତେ କଦମ ଚ଼ାଲିଯାଇ ଅଣ୍ଟାରେ ହାତ ଦୁଇଟିକୁ ଭରାଦେଇ କଣେଇ କଣେଇ କ'ଣ ସବୁ ଦେଖନ୍ତି । ବନ୍ଧଘାଟରୁ ବେଳେବେଳେ ଖିଲିଖିଲି ହସ ସାଙ୍ଗକୁ ଜଙ୍ଗଲୀ ଭାଷାରେ କ'ଣ ସବୁ ମନ୍ତବ୍ୟ ଛୁଟିଆସେ । ନିଘା ନ ଥାଏ ବାବୁଙ୍କର ସେ ସବୁ ପ୍ରତି । କ'ଣ ବା ବୁଝିବେ ସେଥିରୁ ସେ । ଘାଟ ନିର୍ଜନ ନ ହେବା ଯାଏ ମନମୋହନ ବାବୁଙ୍କ ପ୍ରାତଃ ଭ୍ରମଣ ସରେ ନାହିଁ । ନ'ଟା ସରିକି ସରକାରୀ ବାସଭବନକୁ ଫେରି, ଦପ୍ତର ଯିବା ପାଇଁ ଖାନା-ପିନା ଉପରେ ତନାଘନା କରନ୍ତି ଘରଣୀଙ୍କୁ । ମନମୋହନ ବାବୁଙ୍କ ମନଲାଖି ଖାଇବା, ଏକ ପିସ୍' ରୋହି ମାଛର ପେଟି ମସଲାଦିଆ ଭଜା, ସାଗବଡ଼ିର ଗରମ୍ଭ ଗରମ ଭଜା, ବହଳ ବହଳ ହରଡ଼ ଡାଲି, ସାଙ୍ଗକୁ ଆଳୁପୋଟଳ

Digitized by srujanika@gmail.com

ରସା, ପାତଳଘଣ୍ଟାର ଚଟଣୀ ସହିତ ସରୁ ଅନ୍ନର ସବୁଦିନିଆ ବରାଦକୁ, କଲେଜ ଯିବା ପୂର୍ବରୁ ଯଦି ଘରଣୀ ଠିକ୍‌ମତେ ଠା' ପିଢ଼ା ବେଙ୍କକୁ ଯୋଗାଡ଼ି ନ ଦେଇଛନ୍ତି, ତା ହେଲେ ସେଦିନ ଘରଣୀଙ୍କ ପିତୃଦେବ ତାଙ୍କର ଭାତୃଦେବରେ ପରିଣତ ହେବା ଅସମ୍ଭବ ନୁହେଁ ।

ତୁମୁଡ଼ି ବନ୍ଧ ମହାବିଦ୍ୟାଳୟର ଅଧକ୍ଷ ଦାୟିତ୍ୱ ନେବା ପରଦିନଠାରୁ ଏହା ହେଲା ମନମୋହନ ବାବୁଙ୍କର ଦୈନିକ ପୂର୍ବାହ୍ନର ରୁଟିନ୍ । ହେଲେ, କେଜାଣି କେଉଁଥିପାଇଁ, କିଛି ଦିନ ହେବ ବାବୁଙ୍କର ରୁଟିନ୍ ବଦଳି ଯାଇଛି । ବଜାରରେ ଅନେକ କଥା ଶୁଣିବାକୁ ମିଳୁଛି । ପ୍ରିନ୍‌ସିପାଲ ସାହେବଙ୍କର ବହୁତ ପରିବର୍ତ୍ତନ । ପ୍ରାତଃ ଭ୍ରମଣ ପରିବର୍ତ୍ତେ ବର୍ତ୍ତମାନ ଧ୍ୟାନ ଧାରଣା । ଭୋର ଚାରିଟାରୁ ସକାଳ ନ'ଟା ପର୍ଯ୍ୟନ୍ତ ଧ୍ୟାନ । ମନମୋହନ ବାବୁଙ୍କର ପୂର୍ବର ସମସ୍ତ ଚାଲିଚଳଣ ବଦଳି ଗଲାଣି ବୋଲି ପ୍ରିନ୍‌ସିପାଲଙ୍କ କେହି କେହି ଚାମଚା ଅଧ୍ୟାପକ ପ୍ରଚାର କରି ବୁଲୁଛନ୍ତି । ପ୍ରିନ୍‌ସିପାଲ ସାହେବ ଧ୍ୟାନରେ ବସିଲେ ମନେହୁଏ ସେ ଯେପରି ଭଗବତ୍‌ଗୀତା ବର୍ଣ୍ଣିତ ଯୋଗାସନରେ ବସିଛନ୍ତି । ନିଶ୍ଚଳ ଶରୀର । ଅର୍ଦ୍ଧନିମିଳିତ ଚକ୍ଷୁ । ସତେ ଯେପରି ଆଖିର ପୁଅଡୋଳା ଦିଓଟି ତାଙ୍କ ସୂଚ୍ୟଗ୍ର ସଦୃଶ ନାଶିକାଗ୍ରଭାଗକୁ ଦୃଷ୍ଟି ନିକ୍ଷେପ କରିଛନ୍ତି । ପୃଷ୍ଠଭାଗ ମସ୍ତକଚୂଡ଼ାରୁ ମେରୁ ଅଗ୍ର ପର୍ଯ୍ୟନ୍ତ ଏକ ସରଳ ରେଖାରେ ଯେପରି ଅବସ୍ଥିତ । ଓଃ ! କି ସାଧନା ସତେ ! ଦୀର୍ଘ ପାଞ୍ଚଘଣ୍ଟା ଏପରି ଆସନରେ ବସି ରହିବା କ'ଣ ସାଧାରଣ ଲୋକ ପକ୍ଷରେ ସମ୍ଭବ ? ସତେ ଯେପରି ମନମୋହନ ବାବୁ ସେ ସମୟରେ ସମାଧିସ୍ଥ ।

ତୁମୁଡ଼ି ବନ୍ଧର ଅଦୂରରେ ଥିବା ସେହି ସପ୍ତଶୈଳର ଶଯ୍ୟାଭିତରେ କୌଣସି ଏକ ଗୁମ୍ଫା ମଧ୍ୟରେ, ଜଟାଜୁଟଧାରୀ ଏକ ଲଙ୍ଗୁଳି ବାବା, ଯଦିଓ କାହିଁ କେତେ ବର୍ଷରୁ ଧୁନି ଜଳାଇ ସାଧନାରତ, କୌଣସି ଅଲୌକିକତା ପ୍ରଦର୍ଶନ ନ କରିଥିବାରୁ ତାଙ୍କ ନିକଟରେ ଜନସମାଗମ ପ୍ରାୟ ନାହିଁ । କଦବା କେତେବେଳେ ସ୍ଥାନୀୟ ଆଦିବାସୀ ବୃଦ୍ଧମାନେ ଈଶ୍ୱରଙ୍କ ଲୀଳା ସମ୍ପର୍କରେ ଶୁଣିବାକୁ ତାଙ୍କ ନିକଟକୁ ଯିବା ଆସିବା କରନ୍ତି ଓ ତାଙ୍କୁ ଜଟିଆବାବା ବୋଲି ଡାକନ୍ତି । ମନମୋହନଙ୍କ ସାଧନା ସମ୍ପର୍କରେ ଏହି ସୂତ୍ରରୁ ବୋଧହୁଏ ସୂଚନା ପହଞ୍ଚିଲା କଙ୍କାଳସାର ବୃଦ୍ଧ ଜଟିଆବାବାଙ୍କ କତିରେ । ସଂସାରତ୍ୟାଗୀ ବାବା ହେଲେ ମଧ୍ୟ, ସଂସାର ସାଗର ମଧ୍ୟରେ ବୁଡ଼ି ରହିଥିବା ଏଭଳି ଏକ ସାଧକଙ୍କର ଖବର ପାଇବା ପରେ ଜଟିଆବାବାଙ୍କର ଏହି ନବ ସାଧକଙ୍କର ଦର୍ଶନାଭିଳାଷ ଜାତ ହେଲା ।

ଦିନେ ହଠାତ୍ ଭୋର ଭୋର, ଜଟିଆବାବା ଆଶାବାଡ଼ି ଓ କମଣ୍ଡଳୁ ହସ୍ତରେ ପହଞ୍ଚିଗଲେ ମନମୋହନ ବାବୁଙ୍କ ବାସଭବନରେ । ସରକାରୀ ନିଯୁକ୍ତିପ୍ରାପ୍ତ

Digitized by srujanika@gmail.com

ଅର୍ଦ୍ଧଲିଟି ବାବାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ଜଣାଇ ଦେଲା ଯେ ପ୍ରିନ୍‌ସିପାଲ ସାହେବ ବ୍ରାହ୍ମମୁହୂର୍ତ୍ତରୁ ଧ୍ୟାନରେ ବସିଛନ୍ତି । ଧ୍ୟାନଭଙ୍ଗ ନ କରିବାକୁ କହି ଜଟିଆବାବା ଅପେକ୍ଷାରେ ରହିଲେ । ଠିକ୍ ନ'ଟା ବେଳକୁ ଆଲାରାମ ଘଡ଼ିର ଚିତ୍କାର ଶୁଣାଗଲା ଓ ତା'ର କିଛିକ୍ଷଣ ପରେ, ତିଳକଧାରୀ ଆପାଦମସ୍ତକ ଗୈରୁବସ୍ତ୍ରାବୃତ ମନମୋହନ ବାବୁ କାଷ୍ଠପାଦୁକାର ସହଯୋଗରେ ଆସି ଆବିର୍ଭାବ ହେଲେ । ଜଟିଆବାବାଙ୍କୁ ସମ୍ମୁଖରେ ଦେଖି ମନମୋହନଙ୍କ ମୁହଁ ଉପରେ ସାମାନ୍ୟ ବିରକ୍ତିର ଭାବ ପ୍ରକାଶ ପାଇଥିଲେ ମଧ୍ୟ ଲୌକିକତା ଦୃଷ୍ଟିରୁ ସସମ୍ମାନରେ ଆଗମନର କାରଣ ଜିଜ୍ଞାସା କଲେ ।

ଜଟିଆବାବା ବାବୁଙ୍କର ସାଧନା ସମ୍ପର୍କରେ ଶୁଣି ତାଙ୍କୁ ସାକ୍ଷାତ କରିବା ପାଇଁ ଆସିଥିବା କଥା ଜଣାଇବାରୁ ମନମୋହନ ବାବୁ କୃତ୍ୟକୃତ୍ୟ ହୋଇ ନିଜର କୃତଜ୍ଞତା ଜଣାଇଲେ । ହେଲେ ଦୀର୍ଘ ସମୟ ବକଧ୍ୟାନାସୀନ ହୋଇ ବସିଥିବାରୁ ତାଙ୍କ ଭାରାକ୍ରାନ୍ତ ଆଖିର ପତା ଦୁଇଟି ସ୍ୱାଭାବିକତା ହରାଇ ବସିଥାନ୍ତି ।

ଜଟିଆବାବା ଅତି ସାବଧାନତାର ସହିତ ଏ ସବୁ ଲକ୍ଷ୍ୟ କରୁ କରୁ, ପ୍ରିନ୍‌ସିପାଲ ସାହେବଙ୍କ ସମ୍ମତିରେ ପ୍ରଶ୍ନକଲେ :

''ବାବା ! ଏହି ଦୀର୍ଘ ଧ୍ୟାନ ସମୟରେ ଆପଣ କ'ଣ ଅନୁଭବ କରନ୍ତି ?''

ପ୍ରିନ୍‌ସିପାଲ ସାହେବ ସଙ୍ଗେ ସଙ୍ଗେ ଉତ୍ତର ଦେଲେ—

''ଏକ ଜ୍ୟୋତିର୍ମୟ ପିଣ୍ଡ ମଧ୍ୟରେ ମୋର ଭ୍ରୂଯୁଗଳ ମଧ୍ୟସ୍ଥଳରୁ ଏକ ଜ୍ୟୋତି ନିର୍ଗତ ହୋଇ ସମ୍ମିଳିତ ହୋଇଯାଏ ଓ ମୁଁ ନିର୍ବାକ୍ ନିଶ୍ଚଳ ହୋଇଯାଏ ।''

''ଅଦ୍ଭୁତ ! ଅଦ୍ଭୁତ ! ଅତି ସୁନ୍ଦର । କି ସୌଭାଗ୍ୟ ଆପଣଙ୍କର । ହେଲେ ବାବା, ଜ୍ୟୋତିର୍ମୟ ସହିତ ଆତ୍ମଜ୍ୟୋତିର ମିଳନ ପରେ ଶରୀରର ସମସ୍ତ ଅବସାଦ ଦୂର ହୋଇଯାଏ । ମୁଖମଣ୍ଡଳରେ ପ୍ରଶାନ୍ତିର ଆଭା ଦୃଶ୍ୟମାନ ହୁଏ । କିନ୍ତୁ ଆପଣଙ୍କ ଚକ୍ଷୁରେ ଅବସାଦର ମାତ୍ରା ଘନୀଭୂତ । ମୁଖମଣ୍ଡଳରେ ଅଶାନ୍ତିର କାଳିମା ଜମାଟ ବାନ୍ଧିଛି । ସତେ ଯେପରି ଆପଣ କୌଣସି ବଞ୍ଚିତ ବାସନା ଓ କାମନାର ମୋହରେ ଚିନ୍ତାମଗ୍ନ । କାରଣ କ'ଣ ବାବା ?''

ଘୂମନ୍ତ ଚକ୍ଷୁ ଦୁଇଟି ମନମୋହନଙ୍କର ବିସ୍ଫାରିତ ହୋଇ ପଡ଼ିଲା । ତାଙ୍କ ମୁଣ୍ଡ ଉପରେ, ଚାତକୁ ଛାତିରେ ଚାପି ରଖି ଝିଟିପିଟିଟା କହିଉଠିଲା—'ଠିକ୍ ଠିକ୍, ଠିକ୍ ଠିକ୍, ଠିକ୍ ଠିକ୍' ।

•

* 'ଶତଦ୍ରୁ' ପୂଜାସଂଖ୍ୟା – ୧୯୯୩

Digitized by srujanika@gmail.com

# ପୋଥି ବାଇଗଣ

ପଣ୍ଡିତ ପ୍ରଭଞ୍ଜନ ଶତପଥିଙ୍କୁ ତାଙ୍କ ଗାଁ ହରିବୋଲପୁର ତଥା ଆଖପାଖ ସମସ୍ତ ଗାଁର ଲୋକେ ପଣ୍ଡିତ ଶିରୋମଣି ଭାବରେ ଡାକିଥା'ନ୍ତି । ଶତପଥି ମହାଶୟ ଜଣେ ସଂସ୍କୃତଜ୍ଞ ପଣ୍ଡିତ ନୁହନ୍ତି । ମାତ୍ର ପଣ୍ଡିତ ମୋତିଲାଲ, ପଣ୍ଡିତ ଜବାହାରଲାଲଙ୍କ ଭଳି ପଣ୍ଡିତବଂଶରେ ଜନ୍ମ ନେଇଥିବା କାରଣରୁ ତାଙ୍କ ନାମ ପୂର୍ବରୁ ପଣ୍ଡିତ ଶବ୍ଦଟା ଜନ୍ମଜାତକ ଦିନଠାରୁ ଲାଗି ରହିଛି ।

ପଣ୍ଡିତ ଶିରୋମଣିଙ୍କ ଗାଁର ନାମ ବନ୍ଦୋବସ୍ତ ରେକର୍ଡରେ, ରାଜସ୍ୱ ଗାଁ ଭାବରେ ହରିବଲ୍ଲଭପୁର । ତଥାପି ଲୋକ ମୁହଁରେ ତାହା ହରିବୋଲପୁର । ଅବଶ୍ୟ ହରିବୋଲପୁର ନାମର ଉତ୍ସ କିମ୍ବଦନ୍ତୀରୁ ଅନ୍ୟପ୍ରକାର ଜଣାଯାଏ ତାହା ପରେ କହୁଛି । ହେଲେ ଲୋକମୁଖରେ ଗାଁର ନାମଟି ହରିବୋଲପୁର ହୋଇଥିବାରୁ ଏଠିକା ବାସିନ୍ଦାଙ୍କୁ ହରିବୋଲପୁରିଆ ଓ ଅପଭ୍ରଂଶେ ହରିବୋଲିଆ ବୋଲି ମଧ୍ୟ କେତେକ କହନ୍ତି । ସୁତରାଂ ପଣ୍ଡିତ ଶିରୋମଣିଙ୍କୁ ମଧ୍ୟ ସାଦରେ ଅନେକେ ହରିବୋଲିଆ ପଣ୍ଡିତ ବୋଲି ମଧ୍ୟ ସମ୍ବୋଧନ କରିଥା'ନ୍ତି । ସେ ଯାହାହେଉନା କାହିଁକି, ଏହି ଗାଁଟିର ଇତିବୃତ୍ତି ଓ ଅବସ୍ଥିତି ନେଇ ପରିହାସ କରିବାକୁ ଯାଇ ଏ ଗାଁର ବନ୍ଧୁ ଗାଁ ଲୋକେ କୁହନ୍ତି ଯେ, ହରିବୋଲପୁରକୁ କୁଆଡ଼େ ପାଣ୍ଡବ ମାଡ଼ି ନାହାନ୍ତି । ସତେ ଯେପରି ପୁରୁଣା ଢେଙ୍କାନାଳ ଜିଲ୍ଲାର ଏହି ଗାଁକୁ ଛାଡ଼ିଦେଲେ ଆଉ ସମସ୍ତ ଅଖ୍ୟାତ ପ୍ରଖ୍ୟାତ ଗ୍ରାମ ଗୁଡ଼ିକ ପାଣ୍ଡବମାନଙ୍କର ଚରାଭୂଇଁ ହୋଇ ରହିଥିଲା ।

ଅବଶ୍ୟ ଏ ଗାଁଟିର ଅବସ୍ଥିତି ଦେଖିଲେ ଯେ କେହି ଲୋକ ଏପରି ମନ୍ତବ୍ୟକୁ ସତ୍ୟବୋଲି ଗ୍ରହଣ କରିନେବେ । ନୂତନ ଅନୁଗୋଳ ଜିଲ୍ଲାର ସଦର ମହକୁମାର ପଶ୍ଚିମକୁ ଲମ୍ବିଯାଇଥିବା ଏକ ନାଲିଗୋଡ଼ି ମିଶା ଅଙ୍କା ବଙ୍କା ରାସ୍ତାର କୋଡ଼ିଏ ମାଇଲିଠୁ ଧୁସରିଆ ଏକ ମାଟି ରାସ୍ତା ଜିଆମଡ଼ା ରାସ୍ତାଭଳି ଜଙ୍ଗଲ ଭିତରେ ପ୍ରାୟ ତିନିମାଇଲ ଲମ୍ବିଯାଇଛି ଉତ୍ତର ପଶ୍ଚିମକୁ । ତା'ପରେ ଏହି ଗାଁଟି ଏକ ସମତଳ ମାଳ ଉପରେ ଅବସ୍ଥିତ । ପାନଖିଆ ପୋକଡ଼ା ଦାନ୍ତର ଗୋଜଭଳି ଏ ଗାଁର ଚାରିପଟରେ ମୁଣ୍ଡଟେକି ଠିଆ ହୋଇଛନ୍ତି ପୁଞ୍ଜାଏ ପାଞ୍ଚୁଟା ମୁଣ୍ଡିଆ । ତା'ରି ଭିତର ଦେଇ ପବନ କାଟେ ତା'ର ବାଟ ଏଇ ଗାଁ ଭିତରକୁ

Digitized by srujanika@gmail.com

ସୁ ସୁ ହୋଇ । ବେଳେବେଳେ ତାହା ଏତେ ଅମାନିଆ ହୋଇପଡ଼େ ଯେ ଘର ଚାଳ ସହିତ ଟେକିନେଇ ଉଡ଼ିଯାଏ । ଗାଁ ସାରା ହରିବୋଲ ଚ୍ଛିତ୍କାରରେ କମ୍ପିଉଠେ, ବତାସ ଥମିଯାଏ । ତେଣୁ ଏ ଗାଁର ପୁରୁଖା ପଣ୍ଡିତମାନେ ଗାଁର ନାଁ'ଟା ହରିବୋଲପୁର ନ କହି ହରିବଲ୍ଲଭପୁର ରଖିଥିଲେ । ହେଲେ ଅପଭ୍ରଂଶ ସୂତ୍ରରେ ତାହା ହରିବୋଲପୁର ହୋଇଯାଇଛି ଅବଶେଷରେ ।

ଏକାନ୍ତ ଦୂର ମାଳଜାଗାରେ ଗାଁଟି ଥିଲେ ମଧ୍ୟ, ଏହା ବିରାଟ ଗାଁ । ଲୋକସଂଖ୍ୟା ପନ୍ଦରରୁ କୋଡ଼ିଏ ହଜାର ସରିକି । ସବୁ ପାଟକର ଲୋକେ ପାରସ୍ପରିକ ସ୍ନେହାନୁବନ୍ଧନରେ, କେଉଁକାଳରୁ ଏ ଗାଁରେ ରହି ଆସୁଛନ୍ତି । ଏଠି ଛତିଶିପାଟକର ରାଜା ମଧ୍ୟ ଅଛନ୍ତି । ତାଙ୍କୁ ହିଁ ଲୋକେ ପଣ୍ଡିତ ବୋଲି ସମ୍ବୋଧନ କରିଥା'ନ୍ତି ।

ସ୍ୱାଧୀନ ସରକାର ଆସିବା ପରଠାରୁ ଏ ଗାଁରେ ଗୋଟିଏ ନିମ୍ନ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇ କ୍ରମେ କ୍ରମେ ତାହା ବଡ଼ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ପର୍ଯ୍ୟନ୍ତ ଗଲାଣି, ହେଲେ ଏହା ପୂର୍ବରୁ ମାଟିବଂଶ ଅବଧାନଙ୍କ ଚାଟଶାଳୀ ଓ ତା' ଉପରକୁ ଏକ ସଂସ୍କୃତ ଟୋଲ୍, ଏଇ ଗାଁରୁ ହରିବୋଲିଆ ସୃଷ୍ଟି କରିବାର ପୀଠ ଥିଲା । ହରିବୋଲପୁର ଶାସନ ସାହିର ପିଲାମାନେ କୁଳ ପେଶାପାଇଁ ବିଦ୍ୟାଭ୍ୟାସ କରିବାକୁ ବାଧ୍ୟ ହେଉଥିଲେ ଟୋଲି ଭିତରେ ପଶି ଓ ବ୍ରାହ୍ମଣେତର ପାଟକମାନେ ନିଜ ନିଜ କୁଳବେଉସା ପାଇଁ ଚାଟଶାଳୀ ପାଠ ହିଁ ଯଥେଷ୍ଟ ବିଚାରୁ ଥିଲେ ।

ଏବେ କିନ୍ତୁ ଗାଁରେ ହାଇସ୍କୁଲ ହେବାପରେ, ପାଟକନିର୍ବିଶେଷରେ ଆଧୁନିକ ପାଠରେ ସମସ୍ତେ ଧୁରୀଣ ହେବାକୁ ପ୍ରତିଯୋଗିତାରେ ଲାଗିପଡ଼ିଛନ୍ତି । ହେଲେ ପାଟକରାଜାଙ୍କ ପିଲାଙ୍କ ଆଗରେ ସେମାନେ ବା କି ସରି ! ଯେତେବେଳେ ସେମାନଙ୍କ ପିଠିରେ ଜନ୍ମରୁ ବସିଛି ପଣ୍ଡିତ ମୋହର, କପାଳରେ ଲାଗିଛି ପଣ୍ଡିତ ନାମଫଳକ, ଛାତି ଗର୍ବରେ ଫୁଲିଉଠେ ପଣ୍ଡିତ ଡାକରେ । ପଣ୍ଡିତ ପଦକୁ ସାର୍ଥକ କରିବା ପାଇଁ ସେମାନଙ୍କ ମୁହଁରେ ବାଟୁଳି ବାଜେନି କଥା କହିଲା ବେଳେ । ତେଣୁ ଏହି ପାଟକରାଜାମାନଙ୍କୁ ହିଁ ହରିବୋଲିଆ ବୋଲି ଲୋକେ ବିଶେଷଭାବରେ କହିଥା'ନ୍ତି ।

ଜନ୍ମରୁ ପଣ୍ଡିତ ପ୍ରଭଞ୍ଜନ ଶତପଥି ନିଜ ଉଚ୍ଚଶିକ୍ଷା ଓ ପ୍ରଗଲ୍‌ଭତା ପାଇଁ ନିଜ ଗାଁ ଓ ଆଖପାଖ ଲୋକଙ୍କ ନିକଟରେ ଖାଲି ପଣ୍ଡିତ ନୁହନ୍ତି, ପଣ୍ଡିତ ଶିରୋମଣି ପ୍ରଭଞ୍ଜନ ଶତପଥି ଭାବରେ ବିଖ୍ୟାତ । କୌଣସି ବିଷୟରେ ଯଦି

Digitized by srujanika@gmail.com

ତାଙ୍କୁ କହିବା ପାଇଁ ବା ଟିପ୍ପଣୀ ଦେବା ପାଇଁ ସୁବିଧା ମିଳିଗଲା, ତାଙ୍କର ବାକ୍‌ପଟୁତାରେ ସେ ଘଟଣାକୁ ଏପରି ଏପଟ ସେପଟ କରି ବର୍ଣ୍ଣନା କରି ଦେବେ ଯେ, ପ୍ରସ୍ତ ପ୍ରସ୍ତ କରି କଥାର ଜାଲ ଭିତରୁ ଅସଲ ମଞ୍ଜିଟାକୁ ବାହାର କରିବା କାଠିକର ପାଠ । ସେଥିକୁ ଚେଷ୍ଟା କରୁଥିବା ଲୋକେ ଭୂଆଁ ବୁଲୁଥିବେ ।

ସେ ଯାହାହେଉ, ବିଶ୍ୱବିଦ୍ୟାଳୟ ନିୟମାନୁସାରେ, ଏହିଂ ହରିବୋଲିଆ ଶତପଞ୍ଚି ପଣ୍ଡିତ ଶିରୋମଣିଙ୍କର ଯଥାଯଥ ଯୋଗ୍ୟତା ନ ଥାଇ ମଧ୍ୟ ଓଡ଼ିଶାର କୌଣସି ଏକ ମହାବିଦ୍ୟାଳୟର ପ୍ରମୁଖ ଅଧ୍ୟାପକ ତଥା ଅଧ୍ୟକ୍ଷ ଭାବରେ ନିଯୁକ୍ତି ଏକ ବହୁ ଅଭିଜ୍ଞ ଅଧ୍ୟାପକ କାରଣରୁ । ଏଭଳି ଏକ ମହିମାଯୁକ୍ତ ପଦବୀରେ ଥାଇ ମଧ୍ୟ, ଦୀର୍ଘଦିନ ଧରି ସହରୀ ସଭ୍ୟତା ଭିତରେ ଉବୁଟୁବୁ ହୋଇ ବି, ହରିବୋଲିଆ ଶତପଞ୍ଚି ପଣ୍ଡିତ ଶିରୋମଣି ତାଙ୍କର ସେହି ଅପାଙ୍କ୍ତେୟ ଅଧୁଷିତ ଗାଁକୁ ଭୁଲି ନାହାନ୍ତି ।

ସେଇ ହରିବୋଲପୁର ଗାଁରେ ଅଛି ତାଙ୍କର କେତେବାଟି ସମ୍ପତ୍ତି । ଅଧବାଟିର ଘରବାଡ଼ି ଛାଡ଼ିଦେଲେ ବାକି ସବୁ ଚାଷଜମି । ସୁତରାଂ ଚାଷ ଖବର ବୁଝିବାକୁ ଶତପଞ୍ଚି ମହାଶୟ ମଝିରେ ମଝିରେ ଗାଁକୁ ଯାଇଥା'ନ୍ତି ।

ସ୍ୱଭାବତଃ ଶତପଞ୍ଚି ମହାଶୟ ଖୁବ୍ ମେଳାପୀ । ଗାଁର ସବୁ ଲୋକଙ୍କ ସହିତ ତାଙ୍କର ସମ୍ପର୍କ ଅତ୍ୟନ୍ତ ନିବିଡ଼ ନ ହେଲେ ମଧ୍ୟ, ତାଙ୍କର ଘନିଷ୍ଠତା ରହିଥିଲା କେତେକ ନିର୍ଦ୍ଦିଷ୍ଟ କୃଷିଜୀବୀ ଗାଁ ବାଲାଙ୍କ ସହିତ, ଯେଉଁମାନେ ଥିଲେ ଅତି ସରଳ ବିଶ୍ୱାସୀ ଓ ଶତପଞ୍ଚି ମହାଶୟଙ୍କ ଭାଗୁଆଳୀ ଚାଷୀ ।

ପଣ୍ଡିତ ଶିରୋମଣିଙ୍କ ଆଉ ଏକ ଗୁଣ ହେଉଛି, ସେ ବହୁତ ପଢ଼ା ପଢ଼ି କରନ୍ତି । ରାତି ବାରଟା ପୂର୍ବରୁ କେବେ ସେ ଶଯ୍ୟା ଧରନ୍ତି ନାହିଁ କିଛି ଗୋଟିଏ ବିଷୟ ଶେଷ ନ କଲା ପର୍ଯ୍ୟନ୍ତ । ତାଙ୍କ ମତରେ ଯେତେ ପଢ଼ିବ ସେତେ ଜ୍ଞାନ ବଢ଼ିବ ଏବଂ ଜ୍ଞାନ ବଢ଼ିଲେ ତାହାକୁ ବିତରଣ କରିବ । କାରଣ ଜଳ ଓ ଜ୍ଞାନ ବାନ୍ଧିହୋଇ ଏକସ୍ଥାନରେ ବହୁଦିନ ରହିଲେ ଜନସମାଜକୁ କ୍ଷତିକାରକ । ତେଣୁ ତାଙ୍କ ବୈଠକଖାନା ନାନା ପ୍ରକାରର ପତ୍ରପତ୍ରିକାରେ ପରିପୂର୍ଣ୍ଣ । ଯେହେତୁ ପଣ୍ଡିତ ଶିରୋମଣିଙ୍କର ଗ୍ରାମରେ ଏତେଗୁଡ଼ିଏ ଚାଷଜମି ରହିଛି ସେହେତୁ କୃଷିସମ୍ପର୍କୀତ କେତେକ ସୂଚନା ପତ୍ର ମଧ୍ୟ ତାଙ୍କର ବୈଠକଖାନାର ବହି ମେଳା ଭିତରେ ପଡ଼ିଥାଏ ଓ ଗ୍ରାମକୁ ଯିବା ପୂର୍ବରୁ ତାହା ଉପରେ ସେ ସାମାନ୍ୟ ଦୃକ୍‌ପାତ କରି ତନ୍ମଧ୍ୟସ୍ଥ ସମସ୍ତ ଜ୍ଞାନବାରିକୁ ଶୋଷଣକରି ନେଇ, ଗ୍ରାମ୍ୟ କୃଷିଜୀବିମାନଙ୍କ ଉପରେ ବର୍ଷଣ କରିଦିଅନ୍ତି, ଗ୍ରାମର କୃଷିସମ୍ଭାରକୁ ବହୁପ୍ରସୂ କରିବା ପାଇଁ ।

Digitized by srujanika@gmail.com

ଏଥିପାଇଁ ତାଙ୍କର ଯେ ଦାନ ତାହା ଗ୍ରାମର ମଳିମୁଣ୍ଡିଆ କୃଷକଙ୍କ ପାଇଁ ବିଶେଷକରି ତାଙ୍କ ନିଜ ଭାଗୁଆଳୀ ଚାଷୀଙ୍କ ପାଇଁ ବହୁକ୍ଷେତ୍ରରେ ବରଦାନ ସଦୃଶ୍ୟ ହୋଇଛି । ତେଣୁ ଶତପଣ୍ଡିଙ୍କର ପଣ୍ଡିତ ଶିରୋମଣି ଉପାଧି ଏହି ଚାଷୀକୂଳଙ୍କ ପାଖରେ ବିଶେଷ ସମାଦୃତ । ତାଙ୍କ କଥାକୁ ସେମାନେ ବିଶେଷ ମାନ୍ୟତାର ସହ ଗ୍ରହଣ କରିଥା'ନ୍ତି । ସେଇଥିପାଇଁ ବୋଧହୁଏ ଗ୍ରାମର ଏହି ସରଳ କୃଷକମାନଙ୍କୁ ପଣ୍ଡିତ ଶିରୋମଣିଙ୍କ ଅହଂଭାବ ଏକ ନିମ୍ନଦୃଷ୍ଟିରେ ଗ୍ରହଣ କରନ୍ତି । କାରଣ, ଦେଖାଯାଇଛି ଶିକ୍ଷିତ ମଣ୍ଡଳୀମାନଙ୍କର ବହୁ ସଭାରେ ଅଗ୍ରଦୂତ ଭାବରେ ଉପସ୍ଥିତ ହୁଅନ୍ତି ଓ ଏହି କୃଷକମାନଙ୍କୁ ଉପଲକ୍ଷ୍ୟ କରି, ତାଙ୍କର ଅଭିଜ୍ଞତାକୁ କଟାକ୍ଷପାତ କରି ନିଜ ବିଶ୍ୱବିଦ୍ୟାଳୟର ସ୍ୱୀକୃତି ପାଇ ନ ଥିବା କୌଣସି କୌଣସି ପାଠ୍ୟକ୍ରମ ସହିତ ତୁଳନା କରିଥା'ନ୍ତି ।

ପଣ୍ଡିତ ଶିରୋମଣି ଯଥାର୍ଥରେ ଜଣେ ସବୁଜାଣିବା ଅଥଚ କାହିଁରେ ଅମଳ ନ ଥିବା ବ୍ୟକ୍ତି । ଏହି ବ୍ୟକ୍ତିତ୍ୱ ସହିତ ତାଙ୍କର ହରିବୋଲିଆ ଗୁଣରୁ ଥରେ ଏଇ ଗାଁରେ ଏକ ବିପର୍ଯ୍ୟୟ ଘଟିଲା ଯାହାକି ପଣ୍ଡିତ ଶିରୋମଣିଙ୍କ ଏତେକାଳର ଉପାଧି ସକଳ ଉପରେ ଏକ କଳା ଦାଗ ଲାଗି ରହିଗଲା । ଅବଶ୍ୟ ତାଙ୍କ ବଟସ୍କରଙ୍କ ଆଗରେ ସେ ଏହାକୁ ଚନ୍ଦ୍ରରେ କଳଙ୍କ ବୋଲି କହି ହସି ଉଡ଼ାଇ ଦିଅନ୍ତି । ତାଙ୍କ ହରିବୋଲିଆ ଗୁଣରୁ ବିଛାମନ୍ତ୍ର ନ ଜାଣି ମଧ୍ୟ ପଣ୍ଡିତ ଶିରୋମଣି ସବୁବେଳେ ଡମଣା ଓ କାଣ୍ଡନଳ ଲାଙ୍ଗୁଡ଼ରେ ହାତମାରି ବାହାଦୁରୀ ନେଉଥିଲେ । ସେ ବୋଧହୁଏ ଜାଣି ନ ଥିଲେ ଯେ, ଏ ଅଭ୍ୟାସରୁ ହୁଏତ ଭୁଲରେ କେତେବେଳେ ସେ ଗୋଖର ଲାଞ୍ଜରେ ମଧ୍ୟ ହାତ ମାରିଦେଇ ପାରନ୍ତି । ପଣ୍ଡିତବଂଶୀୟ ହୋଇଥିବା ହେତୁ ଗାଁର ''ଘୋଟାଟେ ବଟାଟେ''ରୁ ଆରମ୍ଭ କରି ସହରୀ ସଭ୍ୟତାର ରଙ୍ଗରଙ୍ଗିଆ ପାଣିର ସ୍ୱାଦ ମଧ୍ୟ ପଣ୍ଡିତଙ୍କୁ ମାଲୁମ, ତେଣୁ ସେହି ମୌନ୍ଦକରେ ବେଳେବେଳେ ସେ ଅଥାନ ଥାନରେ ହାତ ମାରିଦିଅନ୍ତି ବା ନାକ ଗଳେଇ ଦିଅନ୍ତି ।

ଥରେ ଶେଷ ଭୋଦୁଅକୁ ହରିବୋଲିଆ ପଣ୍ଡିତ ଶିରୋମଣି ଗାଁକୁ ଯାଇଥିଲେ । ତାଙ୍କ ଭାଗୁଆଳ ଚାଷୀ ରାମ ସୋଇଁ ଆସି ଗୁହାରି କଲା—

''ପଣ୍ଡିତେ ଆପଣେ, ଏସନ ଫସଲ ଭଉତୁ ନିକ ହେଲେ ବି ମୋର ସେ ସୁନାମୁହିଁଯୋରମୁହଁ ଜମିରେ ଧାନଗଛ ପତୁରିଆ ହେଇ ଏଡ଼େ ହେଇଁ ବଢ଼ୁଛି । ଥୋର କାହୁ ନାହିଁ । ମଣ୍ଡିତେ ଆପଣେ ସେଆଡ଼କୁ ଯାଇ ଟିକିଏମାତର ନିଘା ପକାଇଲେ, ଗଣ୍ଡେ ଭଲ ଧାନ ପାଆନ୍ତି ।''

Digitized by srujanika@gmail.com

ହରିବୋଲିଆ ପଣ୍ଡିତ ଶିରୋମଣି ଗାଁକୁ ଆସିଲେ କୃଷି ବୈଜ୍ଞାନିକ । ସଙ୍ଗେ ସଙ୍ଗେ ଛତାଖଣ୍ଡେ ଟାଙ୍ଗରା ମୁଣ୍ଡ ଉପରକୁ ଟେକି ଧରି, ଫୁଲପେଣ୍ଟର ଗୋଡ଼ ଦୁଇଟିକୁ ମୋଡ଼ିମାଡ଼ି ଆଣ୍ଠୁ ଉପରକୁ ଟେକି, ସଯତ୍ନ ସାଇତା ବାଟାଙ୍କର ହଂସ ମାରୁକା କଳା ରବର ପାଣ୍ଡେଇ ହଳକ ସଙ୍ଗାରୁ କାଢ଼ି ପାଦରେ ମଡ଼େଇ ତତ୍କ୍ଷଣାତ୍ ବାହାରି ପଡ଼ିଲେ ସରଜମିନ ସର୍ବେକ୍ଷଣ ପାଇଁ ।

ସୁନାମୁହିଁଯୋରମୁହଁରେ ଠିଆ ହୋଇ, ମୋଟା ମୋଟା ଚଷମାର କାଚ ପଛଆଡୁ ଡିମ୍ବା ଡିମ୍ବା ଆଖି ଦୁଇଟିକୁ ଚାରିଆଡ଼କୁ ଥରେ ଘୂରାଇ ଆଣିଲେ ହରିବୋଲିଆ ପଣ୍ଡିତ ଶିରୋମଣି । ତା'ପରେ ବାହାରିଲା ବ୍ୟାଖ୍ୟାନ ।

"ଶୁଣିଲେ ସୋଇଁପୁଅ, ସୁନାମୁହିଁଯୋରମୁହଁ ଦେଇ, ଏଇ ଗାଁର ସବୁ ସାରଯାକ ଗୋହିରୀ ଭିତରକୁ ଯାଉଛି । ତେଣୁ ତୁମର ଏ ଜମିଟାରେ ସାର ଅଂଶ ବହୁତ ଅସାମଞ୍ଜସ୍ୟ ଭାବରେ ବଢ଼ିଯାଇଛି, ଯେଉଁଥିପାଇଁକି ଏ ଅବସ୍ଥା । ତେଣୁ ଏ ଅସାମଞ୍ଜସ୍ୟତାକୁ ଦୂର କରିବାକୁ ହେବ । ସୁତରାଂ ଏହାର ମାଟିକୁ ପରୀକ୍ଷା କରି କେଉଁ ସାରର ଆବଶ୍ୟକ ଅଛି ବୁଝି ତାହା ପ୍ରୟୋଗ କରିଦେଲେ ତୁମ ଅବସ୍ଥା ସୁଧୁରିଯିବ" ।

ସଦ୍ୟପଠିତ, କୃଷି ମହାବିଦ୍ୟାଳୟର ସଂପ୍ରସାରଣ ବିଭାଗର ଏକ ସୂଚନାପତ୍ରସନ୍ନିବିଷ୍ଟ ମତକୁ ବିଜ୍ଞତାର ସହ ଉଦ୍ଗାର କରିଦେଲେ ହରିବୋଲିଆ ପଣ୍ଡିତ ଶିରୋମଣି ଶତପଣ୍ଡି ମହାଶୟ ।

ହେଲେ ରାମ ସୋଇଁଙ୍କ ମନବୋଧ ହେଉଛି କେତେବେଳେ ? ଏତେ ପଧିବ କଲାବେଳକୁ ସମୟ ନାହିଁ । ମେଘକୁ ଆଉ ବେଳ କାହିଁ । ମାଟି ପରୀକ୍ଷା ହେବ, ରିପଟ ଆସିବ, ତା'ପରେ ସାର କିଣାହୋଇ ପଡ଼ିବ, ସୁନାମୁହିଁ ଜମି ଧାନ କିଆରିରେ କେଣ୍ଡା ବାହାରିବ । ଷାଠିଏ ମହଣ ଘିଅ ଆସିବ ନା ରାଧା ନାଚିବ ? ତାଙ୍କର ତତ୍କ୍ଷଣାତ୍ ଏକ ସମାଧାନ ସୂତ୍ର ଦରକାର, ତେଣୁ ନେହୁରା ହୋଇ କହିଲେ –

"ପଣ୍ଡିତେ ଆପଣେ, ଆମେ ସିନା ମକ୍କିମୁଣ୍ଡିଆ । ଆପଣେ ତ ମଣିଷ ଚରାଇବା ନୁକ । ଏତେ ପରୀକ୍ଷା କ'ଣ ? ମାଟି ଗଣ୍ଡାକ ହାତରେ ଧରିଦେଲେ ଆପଣେ ଜାଣିଯିବେ । ଆମ ସାଆନ୍ତେ କ'ଣ ହିମିତି ଆପଣଙ୍କୁ ପାଠ ପଢ଼େଇଚନ୍ତି ? ଆପଣେ ପରା ଆମ ଗାଁ ଚାରିଖଣ୍ଡିରେ ଅସିଲି ପଣ୍ଡିତେ । ଆପଣେ କହି ପାରିବେନି ?"

Digitized by srujanika@gmail.com

ହରିବୋଲିଆ ପଣ୍ଡିତଙ୍କ ମନ ଏପରି ଫୁଲିବାକୁ ଆରମ୍ଭ କଲା ଏ ପ୍ରଶଂସାବାଣୀରେ ଯେ, ତତ୍‌କ୍ଷଣାତ୍ ସେ ତାଙ୍କର ସ୍ମୃତିଚାରଣ କରିବାକୁ ଲାଗିପଡ଼ିଲେ, ମନେ ମନେ ଅନେକ ସାରର ତୁଳନାତ୍ମକ ଗୁଣାବଳି ଉପରେ – କିନ୍ତୁ ହାୟ ସବୁ କନଫ୍ୟୁଜନ୍, ଗୋଳମାଳ ଗୋଳମାଳ । ସୁପରଫସ୍ଫେଟ୍, ଆମୋନିୟମ ସଲଫେଟ୍, ୟୁରିଆ, ସୋନାସାର, ହିରାସାର, ଚିନିସାର, ଧେତ୍ ତେରିକି – କିଛି ଗୋଟାଏ ନ କହିଲେ ଏ ସାମାନ୍ୟ ଗାଉଁଲି କୃଷକ ପାଖରେ ଅପଦସ୍ଥ ହେବାକୁ ପଡ଼ିବ । ଗଳାକୁ ଦୁଇତିନିଥର ସଫାକରି, ବିଶେଷଜ୍ଞ କୃଷି ଅଧିକାରୀ ଠାଣିରେ ଆରମ୍ଭ କଲେ : ''ବୁଝିଲ ସୋଇଁପୁଅ, ଜମିରେ ଜୁକୁଜୁକିଆ ପାଣି ରଖି, ଭଲକରି ମାହାରା ମୁହଁ ସବୁ ବନ୍ଦକରି ଚିନିସାରରୁ ଏକରକୁ ୪୦ କିଲୋ ହିସାବରେ ସମତୁଲ ଭାବରେ ଛିଞ୍ଚିଦେବ, ତା'ପରେ ମୁଁ ପନ୍ଦର ଦିନଠି ଆସିଲେ ଆଉ କ'ଣ ଲାଗିବ ବିଚାର କରି କହିବି ।'' ଏତକ କହି ଅତର୍ଚ୍ଛା ଝାଡ଼ା ମାଡ଼ିବା ଭଙ୍ଗିରେ ହରିବୋଲିଆ ପଣ୍ଡିତ ଶିରୋମଣି ଘରକୁ ବାହୁଡ଼ିଲେ ସନ୍ଧ୍ୟାରେ ଅନୁଗୋଳ ଠାରୁ ବସଧରି କର୍ମକ୍ଷେତ୍ରକୁ ବାହୁଡ଼ା ଯାତ୍ରା କରିବା ପାଇଁ । ଘରେ ଅନ୍ୟାନ୍ୟ ସମସ୍ତ କାର୍ଯ୍ୟରେ ସୁବନ୍ଦୋବସ୍ତ କରି ଘର ଜଗୁଆଳିକୁ ସବୁକଥା ବୁଝାଇ ପଣ୍ଡିତ ଶିରୋମଣି ଠିକ୍ ସମୟରେ ଅନୁଗୋଳରେ ପହଞ୍ଚିଲେ ଘରଜଗୁଆଳିର ପୁରୁଣା ମଡେଲ ଫିଲିପ୍ସ ସାଇକେଲ ପଛରେ ବସି ।

କର୍ମକ୍ଷେତ୍ରରେ ପହଞ୍ଚୁ ପହଞ୍ଚୁ ବୈଠକ୍‌ଖାନାର ଆଳିମାଳିକା ଗଦାକୁ ଦରାଣ୍ଡିବାରେ ଲାଗିଲେ ପଣ୍ଡିତ ଶିରୋମଣି ତାଙ୍କ ପ୍ରେସ୍‌କ୍ରିପ୍‌ସନର ସଠିକତାକୁ ପ୍ରମାଣ କରିବା ପାଇଁ । ଯାହାହେଉ ପରିଶେଷରେ ପଣ୍ଡିତ ମହାଶୟ ସଫଳ ହେଲେ । ହେଲେ କୃଷି ବିଭାଗର ସୂଚନାପତ୍ର ପାଇବାରେ ପଢୁ ପଢୁ ମୁଣ୍ଡ ଭାଁ ଭାଁ କଲା । ସେ ଯେଉଁ ଚିନିସାରର ପ୍ରେସ୍‌କ୍ରିପ୍‌ସନଟା ସୋଇଁ ପୁଅକୁ ଦେଇ ଆସିଥିଲେ, ତାହା ଅନ୍ୟକିଛି ନୁହେଁ, ଆମୋନିୟମ ସଲ୍‌ଫେଟ୍ । ଏହାର ଉପଯୋଗ ହେଉଛି ଯେଉଁଠି ଗଛ ମୁରୁକୁଟିଆ ହୋଇ ଉଧାଉ ନ ଥିବ ସେଥିରେ ପ୍ରୟୋଗ କଲେ ଗଛ ବଢ଼ି କଳା ବୁଲିଯିବ । ଏ ତ ଓଲଟା କଥା ହୋଇଗଲା ! ପଣ୍ଡିତ ଟିକେ ଥକା ହୋଇ ବସିଗଲେ ଓ ପୁଣି ସ୍ମୃତିଚାରଣ କଲେ କ'ଣ କରାଯାଇପାରେ । ସେ ତ ସବୁ ବିଦ୍ୟାରେ ଧୁରୀଣ ଯଦିଓ କେଉଁଟାରେ ପାରଙ୍ଗମ ନୁହନ୍ତି । ତଥାପି ଜ୍ଞାନର ତ ଅମାପ ଖଣି ତାଙ୍କ ମୁଣ୍ଡ ଭିତରେ । ହଠାତ୍ ହୋମିଓପାଥିର ସୂତ୍ର ମନେ ପଡ଼ିଗଲା । ପଣ୍ଡିତେ ଚେଙ୍ଗା ହୋଇ ଉଠିଲେ । ସେ ଯାହା ବତେଇଛନ୍ତି ଠିକ୍ ବତେଇଛନ୍ତି । ଆମୋନିୟମ୍ ସଲ୍‌ଫେଟର ପ୍ରୟୋଗରେ ଗଛର ବୃଦ୍ଧି ଘଟିଥାଏ, ତେଣୁ ଗଛର ଅସ୍ୱାଭାବିକ ବୃଦ୍ଧିରେ ଆମୋନିୟମ୍ ସଲ୍‌ଫେଟ ପ୍ରୟୋଗ କଲେ

Digitized by srujanika@gmail.com

ତାହା ନିରାକରଣ ହେବ । ଏହା ଏକ ବହୁ ପରୀକ୍ଷିତ ସୂତ୍ର । ତେଣୁ ପଣ୍ଡିତ ଶିରୋମଣି ନିଧଡ଼କ ରହିଲେ, ପନ୍ଦର ଦିନଠି ଯାଇ ହୋମିଓପାଥି ମତରେ ତାଙ୍କର ସାର ପ୍ରୟୋଗର ଫଳାଫଳର ଭୂୟୋଦର୍ଶନ କରିବା ପାଇଁ ।

ତେଣେ, ସୋଇଁ ମହାଶୟ, କଥିତମତେ ଚିନିସାରର ବ୍ୟବହାର କରିଦେଲେ ସୁନାମୁହିଁଯୋର ଜମି ଉପରେ । ତା' ପରେ ଦେଖ ମଜା—ପନ୍ଦର ଦିନ ଭିତରେ ଧାନଗଛ ସବୁ ଏପରି ବଢ଼ିଗଲା ଯେ, ଦୂରରୁ ଅଣଆଖୁଆବଣ ଭଳି ଦେଖାଗଲା । ସୋଇଁ ପୁଅ ମୁଣ୍ଡରେ ହାତଦେଇ ବସି ପଡ଼ିଲେ ହିଡ଼ ମୁଣ୍ଡରେ । ପନ୍ଦର ଦିନଠି ପଣ୍ଡିତେ ଶତପଣ୍ଡି ମଧ୍ୟ ହାଜର ସୋଇଁ ପୁଅକୁ ଖୋଜି ଖୋଜି ।

କୃଷକମାନେ ହିଁ ଏ ଦେଶର ମେରୁଦଣ୍ଡ । ସେମାନଙ୍କର ଶ୍ରମ ଏ ଦେଶର ଜାତୀୟ ଜୀବନର ଉଦ୍ଦୀପନମୂଳକ କାର୍ଯ୍ୟକ୍ରମ ପାଇଁ ଯେ କେତେ ପରିମାଣରେ ଦାୟୀ ତାହା ପଣ୍ଡିତେ ହାଡ଼େ ହାଡ଼େ ଅନୁଭବ କରନ୍ତି । ଅସଲ ଖାଦ୍ୟଗଣ୍ଡାକ ଯଦି ନ ମିଳନ୍ତା, ତାହାହେଲେ କି 'ବେଲୁ', କି 'ଆଇନ ଅଦାଲତ', କାହାରି କରାମତି ଦେଖିବାକୁ ମିଳନ୍ତା ନାହିଁ । ଦାନାଗଣ୍ଡିକ ସୁବିଧାରେ ମିଳୁଥିବାରୁ ହିଁ ଅନନ୍ତାମାନଙ୍କ ଯେତେ ଯେତେ ହୀରୋଗିରି । ରାସ୍ତାଘାଟରେ ସିନେମା, ଟିଭି ସିରିଏଲ୍ ଷ୍ଟାଇଲରେ ଖେଳକୁଦ, ମରାମରି, ଧରାଧରି, ଗୋଡ଼ାଗୋଡ଼ି, ଇତ୍ୟାଦି ଇତ୍ୟାଦି । ତେଣୁ କୃଷକମାନଙ୍କୁ ବେଶୀ ମର୍ଯ୍ୟାଦା ଦିଅନ୍ତି ବୋଲି ହରିବୋଲିଆ ପଣ୍ଡିତ ଶିରୋମଣି ଗାଁକୁ ଆସିଲେ କହି ବୁଲନ୍ତି । କଥା ଦେଇଛନ୍ତି ଯେତେବେଳେ ଆସିବାକୁ ହିଁ ହେବ ଏବଂ ସେ ଆସିଗଲେ । ଘରେ ପହଞ୍ଚି ଧୋତି ଖଣ୍ଡକ ପାଲଟି ପକାଇ, ସୋଇଁପୁଅକୁ ଖୋଜି ଖୋଜି ପହଞ୍ଚିଲେ ସୁନାମୁହିଁ ଯୋରଠି ।

ପଣ୍ଡିତ ଶିରୋମଣିଙ୍କୁ ଦେଖି ସୋଇଁପୁଅ କୋହ ସମ୍ଭାଳି ନ ପାରି ଚିତ୍କାର କରି କାନ୍ଦି ଉଠିଲେ । ସୋଇଁପୁଅ ଶତପଣ୍ଡି ପଣ୍ଡିତଙ୍କୁ କାଳ କାଳକ ମୁଣ୍ଡରେ ବସାଇ ଆସିଛନ୍ତି । ସାତପୁରୁଷର ପୁରହିତ ବଂଶର ପୁଅ ସେ । କେତେ ପାଠପଢ଼ି, ଜ୍ଞାନ ଗାରିମାର ପ୍ରମାଣ ସ୍ୱରୂପ ବିଶ୍ୱବିଦ୍ୟାଳୟରୁ କେତେ କ'ଣ ସାର୍ଟିଫିକେଟ ତାଙ୍କ ଘରେ କାନ୍ଥରେ ଝୁଲାଇ ରଖିଛନ୍ତି । ତେଣୁ ତାଙ୍କ କଥାକୁ ନ ରଖି ସେ ଆଉ କ'ଣ ଅଧାପଢ଼ା ଗ୍ରାମସେବକଙ୍କର କଥା ଶୁଣିଥା'ନ୍ତା ?

ଶ୍ରୀଯୁକ୍ତ ହରିବୋଲିଆ ପଣ୍ଡିତ ଶିରୋମଣି ଶତପଣ୍ଡି ମହାଶୟ ସବୁବେଳେ କେବଳ ବିଶ୍ୱବିଦ୍ୟାଳୟ ପ୍ରମାଣପତ୍ରକୁ ସବୁ ଯୋଗ୍ୟତାର ଅସଲ ମାପକାଠି ବୋଲି ସବୁକ୍ଷେତ୍ରରେ ଯୁକ୍ତି ବାଢ଼ି ଆସିଛନ୍ତି । ସରଳିଆ ସୋଇଁପୁଅ ସେଥିରେ ଭୋଳ । ଏବେ କିନ୍ତୁ ଅକଲ ଗୁଡୁମ୍ । କ'ଣ କରିବେ ?

Digitized by srujanika@gmail.com

ପଣ୍ଡିତ ଶିରୋମଣି ବୁଝେଇ ଚାଲିଛନ୍ତି । "ତୁମେ ଜାଣିନ ସୋଇଁପୁଅ ଏହା ଏକ ନୂଆମତର ସାର ପ୍ରୟୋଗ ହୋଇଛି । ଏଥିରେ ଟିକେ ଏଗ୍ରାଭେସନ ମାନେ ରୋଗ ବଢ଼ି ଯାଉଛି । ତାପରେ ସବୁ ଠିକ୍ ଠାକ୍ ହୋଇଯିବ । ତୁମେ ଦେଖିବ ଏ ଜମିରେ ଏ ବର୍ଷ ଏଭଳି ଧାନ ଆସିବ ଯେ ତୁମେ ଅବାକ୍ ହୋଇଯିବ ।"

ଯେତେ ବୁଝେଇଲେ କି ସୋଇଁପୁଅଙ୍କ ମନ ବୁଝୁଛି । ଦଶହରାକୁ ଦଶ କିସମର ଧାନ ବାହାରିବା କଥା । ସମାନ ଧାନ ବୁଣାଯାଇଥିବା କିଆରିରେ ଧାନ କେଣ୍ଡାରେ କ୍ଷୀର ସୁଖି ମଥା ନୁଆଁଇଲାଣି । ସୁନାମୁହିଁଯୋର ବିଲ ଚାରିପଟରେ ଧାନ କ୍ଷେତ ସବୁ ହରିତ୍‌ରୁ ହରିଦ୍ରା ବର୍ଣ୍ଣ ରଙ୍ଗରେ ଚିତ୍ରିତ ହେବାକୁ ଲାଗିଲେଣି । ଆଉ ସତେକ'ଣ ତା' ଜମିରେ ଧାନ ଫଳିବ ? ହେଇତ ଗୋଟେ ଦୁଇଟା କେଣ୍ଡା ବାହାରିଛି ଯେ ରୋଗଣା ରୋଗଣା ଦେଖା ଯାଉଛି । ଅଗାଡ଼ି ହୋଇଯିବ ପରା !

ଏଣେ ଦଶହରାକୁ ରାମ ସୋଇଁଙ୍କ ପୁଅ ଧୃଷା, କଲିକତାରୁ ମୋଟ ବୁହାଠି ଥୁକୁଲୁ ପକେଇ ଗାଁକୁ ଆସି, ସଦ୍ୟ ପହଞ୍ଚି, ବା'ର ପାଦ ଛୁଇଁବାକୁ ଖୋଜି ଖୋଜି ଗୋହିରୀ ମୁହଁରେ ହାଜର । ହରିବୋଲିଆ ପଣ୍ଡିତ ଶିରୋମଣି ଓ ତା' ବା'ର କଥୋପକଥନ ଶୁଣିଲା ପରେ ମୁଣ୍ଡକୁ ତା'ର ଭୂତ ଚଢ଼ିଗଲା । ଖାଲି ଛତିଶିପାଟକର ରାଜା ଓ ନିଜ ପୁରହିତ ବଂଶର ଲୋକବୋଲି ପଣ୍ଡିତ ଶିରୋମଣିଙ୍କ ଶିରଟା ରକ୍ଷା ପାଇଗଲା । ହେଲେ ଦୋ ଅକ୍ଷରୀ ସମ୍ଭାଷଣରେ ପଣ୍ଡିତଙ୍କ କାନ ଭାଁ ଭାଁ କରି ଉଠିଲା । କାନରେ ଆଙ୍ଗୁଠି ଗେଞ୍ଜି ପଣ୍ଡିତେ ଧାଇଁଲେ ଘରମୁହାଁ । କଛା ଖସିଗଲା ଯେ ମାରିବାକୁ ତର ନାହିଁ । କାନ ଭିତର ଗୁଞ୍ଜନ ମଧ୍ୟରେ ଖାଲି ଶୁଣିବାକୁ ପାଉଥା'ନ୍ତି ବିବେକର ବାଣୀ ।

'ପଣ୍ଡିତେ ପୋଥି ବାଇଗଣ ଓ ବାଡ଼ି ବାଇଗଣ ଭିତରେ ତଫାତଟାକୁ ଶିଖ ।'

* 'ଅମୃତାୟନ' ପୂଜାସଂଖ୍ୟା – ୧୯୯୪

Digitized by srujanika@gmail.com

# ଅଲରାସୂତାରୁ କେରାଏ

ମିନିଟ୍‌କଣ୍ଟା ଓ ଘଣ୍ଟାକଣ୍ଟାର ପ୍ରତିଯୋଗିତା ଖୁବ୍ ତୀବ୍ର । ରାତି ବା'ଠି । ତାପରେ ଏକ, ଦୁଇ, ତିନି—ତା' ସହିତ ତାଳଦେଇ ମୌଲାନା ଆଜାଦ କଲେଜ ହଷ୍ଟେଲର ବାର ନମ୍ବର ପ୍ରକୋଷ୍ଠରେ ହେମକାନ୍ତ ବେଜ୍‌ବରୁଆଙ୍କ ସ୍ନାୟୁତନ୍ତୁଗୁଡ଼ିକ ମଧ୍ୟ ଅତ୍ୟନ୍ତ ଉତ୍ତେଜିତ ।

ରାତି ନଅଟାରେ ଆସାମ ହାଉସ୍‌ର ଲାଉଞ୍ଜରୁ କ୍ୟାପଟେନ୍ ବିଶ୍ୱାସ ଓ ତାଙ୍କ ବନ୍ଧୁ ଚିଫ୍ ଇଞ୍ଜିନିୟର ବଡ଼ଠାକୁରଙ୍କ ନିକଟରୁ ବିଦାୟ ନେଇ ଆସିବାପରେ ସେ ଆଜି ଖୁବ୍ ବିଚଳିତ ।

* * * * * *

ପ୍ରଲୋଭନ—କ୍ୟାପ୍‌ଟେନ ବିଶ୍ୱାସଙ୍କ ଆମନ୍ତ୍ରଣ । କାଲି ସକାଳ ଆଠରେ ଗୌହାଟୀକୁ ତାଙ୍କ ସହିତ ଆସାମ ସରକାରଙ୍କର ବିମାନରେ ଏକ ଫ୍ରି ଲିଫ୍‌ଟ; ଆଉ ତାପରେ ଗୌହାଟୀରୁ ସିଲହଟ୍—ଚିଫ୍ ଇଞ୍ଜିନିୟରଙ୍କର ବିଶେଷ ବ୍ୟବସ୍ଥା—ମୁଖ୍ୟ ରାଜପଥ ଧାରରେ ଥିବା ସମସ୍ତ ଡାକବଙ୍ଗଳା ରିଜର୍ଭ, ଆମୋଦ ପ୍ରମୋଦର ସମସ୍ତ ରାଜକୀୟ ଉପଚାର ସହିତ ।

ଆଃ—ଏମାନେ ଜୀବନର ସହଜ ସରଳ ଗତିକୁ ଏହିଭଳି ଭାବରେ ଉପଭୋଗ କରନ୍ତି ! ଉପଭୋଗର ଫୁଆରା ଭିତରେ ଜୀବନର ସମସ୍ତ ସ୍ୱାଧୀନତାକୁ ଏମାନେ ଇମିତି ଶୃଙ୍ଖଳବଦ୍ଧ କରନ୍ତି ! ଜୀବନ ସ୍ରୋତର ସାବଲୀଳ ଗତିରେ ଭିନ୍ନମୁଖୀ ଖରସ୍ରୋତାର କୃତ୍ରିମ ଯୋଗାଯୋଗରେ ଏମାନଙ୍କର କି ଅଦ୍ଭୁତ ନିଶା !

ହେମକାନ୍ତର ମୁଣ୍ଡ ଗରମ ହୋଇଗଲା—ନା, ନା, ସେ କେବେହେଲେ ପୁନରାୟ ସେହି କୃତ୍ରିମତାର ଜାଲରେ ଛନ୍ଦି ହୋଇ ପାରିବ ନାହିଁ । ସେ ସ୍ଥିର ନିଶ୍ଚିତ । କ୍ୟାପ୍‌ଟେନ ବିଶ୍ୱାସ ଓ ଇଞ୍ଜିନିୟର ବଡ଼ଠାକୁରଙ୍କ ଏ ଅଯାଚିତ ଆମନ୍ତ୍ରଣକୁ ସେ ପ୍ରତ୍ୟାଖ୍ୟାନ କରିବ ।

* * * * * *

ମାନନୀୟ ମହାଶୟ,

ଏ ହତଭାଗ୍ୟ ଜୀବନର କରୁଣ ମୁହୂର୍ତ୍ତ ପ୍ରତି ଆପଣଙ୍କର ସହାନୁଭୂତି ତଥା ସେଥିପାଇଁ ଆପଣଙ୍କ ଭ୍ରାତୃତୁଲ୍ୟ ଉପଦେଶ ପାଇଁ ସମ୍ମାନ ଦେଇ ସାରା ରାତିଟା ମୁଁ ମାନସିକ ଦ୍ୱନ୍ଦ୍ୱ ଭିତରେ ନିଜକୁ ପୁନରାୟ ଗଢ଼ିବାକୁ ଯେଉଁ ପ୍ରଗାଢ଼ ଚେଷ୍ଟା କରୁଥିଲି ସେଥିରେ ଶେଷକୁ ହାର ମାନିଲି । ବିଗତ ଦଶ ବର୍ଷ ତଳକୁ ଫେରିଯାଇ ସେହି ତିକ୍ତ ଦିନଗୁଡ଼ିକ ଭିତରେ ଅଣନିଃଶ୍ୱାସୀ ହୋଇ ହଜିଲା ଖିଅକୁ

Digitized by srujanika@gmail.com

ଖୋଜି ନୂତନ କରି ଏ ଜୀବନକୁ ଗଢ଼ିବାକୁ ଯିବା ଏତେ ବିଳମ୍ବରେ ମୋ ପକ୍ଷରେ ସମ୍ଭବ ନୁହେଁ ।

ତଟିନୀ ତା'ର ମୂଳ ଗତିରୁ ବିଚ୍ଛିନ୍ନ ହୋଇ ନିଜ ସ୍ରୋତରେ ବହି ଚାଲିଛି – ତା' ସହିତ ପୁନର୍ମିଳନ କେବଳ ସମ୍ଭବ ସୃଷ୍ଟିର ସେହି ବିଶାଳ ସାଗରର ଅସୀମ ଜଳାଧାର ଭିତରେ । ମୁଁ କେବଳ ତା'ରି ଅପେକ୍ଷାରେ ରହିଛି ।

ଏହି ଦଶନ୍ଧି ଭିତରେ ନାନା ଝଡ଼ଝଞ୍ଜାର ବୁକୁ ଭିତର ଦେଇ ମୁଁ ମୋ'ର ଜୀବନକୁ ଗଢ଼ିବାକୁ ଚେଷ୍ଟା କରିଛି – କାହାରି ସାହାଯ୍ୟ ବା ସହାନୁଭୂତି ପାଇନି । ଏହି କଷ୍ଟ ଭିତରେ ଯାହା ବା ପାଇଛି ସେଥିରେ ନିଜକୁ ଗୌରବାନ୍ୱିତ ମଧ୍ୟ ମନେ କରିନି । ଅଭିମାନରେ ଭରିଉଠିନି ମୋର ବୁକୁ, କାରଣ ଅଭିମାନ କରିବାର ମୋର କିଛି ନାହିଁ । ତେଣୁ ପୁନର୍ବାର ପଛକୁ ଫେରି ଯାହା ପାଇଛି ତା'କୁ ହରାଇବି କାହିଁକି ? କିପରି ଏ ଦିଗ୍‌ବଳୟ ତଳେ ଲୁଚିଥିବା ନୂତନ ଆଲୋକର ଆକର୍ଷଣରୁ ମୁଁ ଦୂରେଇନେବି ନିଜକୁ ?

ଆଃ, ଏ ଦୁନିଆ କି ବିଚିତ୍ର ସତେ ! ଭଗବାନଙ୍କର କରଣୀ ଅତ୍ୟନ୍ତ କଠୋର – ତାଙ୍କର କାର୍ଯ୍ୟକଳାପକୁ ସମୀକ୍ଷା କରାଯାଇ ପାରେନା – ମନୁଷ୍ୟକୃତ ନିୟମ ଶୃଙ୍ଖଳ ମଧ୍ୟରେ ବନ୍ଧାଯାଇ ପାରେନା – ଯାହା ସବୁରି କ୍ଷେତ୍ରରେ ହୁଏ ତାହା ଆଉ ଜଣକ କ୍ଷେତ୍ରରେ ଯେ ଅବଶ୍ୟ ଘଟିବ ତାହା ସବୁବେଳେ ଠିକ୍ ନୁହେଁ । – ତା'ର ବ୍ୟତିକ୍ରମ ମଧ୍ୟ ଘଟେ ।

ଏ ଘଟଣାର ପୁନରୁଜ୍ଜୀବନରେ ଆପଣମାନେ ଯେ ଖୁବ୍ ଆନନ୍ଦଲାଭ କରିବେ ତାହା ନିଃସନ୍ଦେହ, ମାତ୍ର ତାହା ଦ୍ୱାରା ଏ ଜୀବନର ପୁନର୍ବିକାଶ ଘଟିବ ସେଥିରେ ମୋର ଘୋର ସନ୍ଦେହ ରହିଛି । ଯାହାର ପୁନର୍ବିକାଶ ହେବ ନାହିଁ ତା'ର ପୁନର୍ମିଳନରେ ମୁଁ ଘୋର ବିରୋଧୀ । ଗୋଟାଏ 'ଯଦି' ଉପରେ ନିର୍ଭର କରି ପୁନରାୟ ପଛକୁ ଫେରି ସାମ୍ଭାବ୍ୟ ଅଶାନ୍ତି କିଣିବା କାହାରି ପକ୍ଷରେ ଶୁଭଙ୍କର ନୁହେଁ ।

ଖୁବ୍ ଖୋଲା ଭାବରେ ମୋର ମତାମତ ଜଣାଇବାକୁ ହେଲେ, ମର୍ମାହତ ମଣ୍ଡୁକରାଜର ଶେଷକଥା ହିଁ ମୁଁ କହିବି – "ନ ଗଙ୍ଗଦତ୍ତ ପୁନରପି କୂପମ୍" । ସେ ଜୀର୍ଣ୍ଣ ଅତୀତ ଭିତରେ ଆଉ କିଛି ନାହିଁ, ଭରି ରହିଛି କେବଳ କୁଚକ୍ର, ଆଶଙ୍କା ଆଉ ଦୀର୍ଘଶ୍ୱାସ । ମନ ମଧ୍ୟରେ ମୋର ଯେଉଁ ଦ୍ୱନ୍ଦ୍ୱ ସେଥିରେ ମୁଁ ପରାଜୟ ସ୍ୱୀକାର କରିଛି –

* * * * * *

ମୁଣ୍ଡ ଉପରେ ଥିବା ଜୀର୍ଣ୍ଣ ଲାଇଟ୍ ପଏଣ୍ଟଟି ହଠାତ୍ ଖସିପଡ଼ିଲା – ତା'ପରେ ଏକ ଅସ୍ପଷ୍ଟ ଚିତ୍କାର ଓ ଅଦୂରରେ ପେଚକର ତିନିଥର ଅସହ୍ୟ ଶବ୍ଦରାଜି ।

* 'ଶତଦ୍ରୁ' ଜୁଲାଇ-ସେପ୍ଟେମ୍ବର – ୧୯୮୫

Digitized by srujanika@gmail.com

# 'ହିପୋକ୍ରିସି'

ଶୁକ୍ଳ ଶରତର ଚତୁର୍ଥ ଦିନ । ମେଘମାଳ ଆକାଶର ଚାନ୍ଦୁଆରେ ଅର୍ଦ୍ଧଚନ୍ଦ୍ରର ଛନ୍ଦ ଝୁଲୁଛି । ଦି'ପହରେ ଅସରାଏ ବର୍ଷା ହୋଇଯିବା ପରେ ସଞ୍ଜ ପହରଟା ବେଶ୍ ଶୀତଳ ଲାଗୁଛି । ମୃଦୁପବନର ହିଲ୍ଲୋଳ ଶରୀର ଓ ମନକୁ ସରସ କରିବା ସଙ୍ଗେ ସଙ୍ଗେ ଭାରାକ୍ରାନ୍ତ ମନକୁ ବେଶ୍ ହାଲୁକା କରି ଦେଉଛି । ସାରାଦିନର ଓପାସରେ ଆଖିର ଉପରପତା ଯୋଡ଼ିକ ଆପେ ଆପେ ଓଜନିଆ ହୋଇ ନିଜର ଭାରସାମ୍ୟ ରଖିପାରୁ ନାହାନ୍ତି । ତଥାପି ଶ୍ରଦ୍ଧାନନ୍ଦ, ଜାଭେଦ୍ ଓ ଜୋସେଫ ଶ୍ରଦ୍ଧାନନ୍ଦଙ୍କ ତିନିତାଲା କୋଠା ଉପରେ ଏକ ଗମ୍ଭୀର ବାତାବରଣ ଭିତରେ ଗରମାଗରମ ଆଲୋଚନାରେ ବ୍ୟସ୍ତ ।

ଶ୍ରୀଜଗନ୍ନାଥଙ୍କର ଶ୍ରୀମୁଖକୁ ଧାରଣ କରିଥିବା ଓ ଏକ କ୍ରୁଶର ଚିହ୍ନକୁ ସ୍ପଷ୍ଟ କରୁଥିବା ଆଲୋକରଶ୍ମିକୁ ଶିଢ଼ିଘରର କାଚବାଟେ ବାହାର କରିଦେଉଥିବା ଏହି ଶୁଭ୍ର ଧଉଳା କୋଠାଟି, ଆକାଶରେ ଝୁଲୁଥିବା ଅର୍ଦ୍ଧଚନ୍ଦ୍ରର ଜ୍ୟୋତ୍ସ୍ନାରେ ଅତି ଚମତ୍କାର ରୂପରେ ସାମନା ପୁଷ୍ପ ଉଦ୍ୟାନକୁ ଅବଲୋକନ କରୁ କରୁ ନିଜ ଶିରରେ ବହନକରି ବସିଛି ଆଜି ଏହି ତିନି ବନ୍ଧୁଙ୍କ ଭାରାକ୍ରାନ୍ତ ମଥାଥିବା ଶରୀର ସବୁକୁ ।

ଗଣେଶ ପୂଜାରେ ପୁଷ୍ପାଞ୍ଜଳି ପାଇଁ ସାରାଦିନ ଉପବାସ ପରେ ଯତ୍‌କିଞ୍ଚିତ ପ୍ରସାଦ ହାତରେ ଧରି ସନ୍ଧ୍ୟାଧୂପ ପରେ ପରେ ଉଠି ଆସିଛନ୍ତି ତିନି ବନ୍ଧୁ ଏହି ମନୋରମ ଏବଂ ନିରୋଳା ସ୍ଥାନଟିକୁ କୌଣସି ଏକ ଗୁରୁତର ସମସ୍ୟା-ସମ୍ବଳିତ ବିଷୟ ଉପରେ ଚର୍ଚ୍ଚା ପାଇଁ ।

ଶ୍ରଦ୍ଧାନନ୍ଦ, ଜାଭେଦ ଓ ଜୋସେଫ ଏହି ସହରର ଗୋଟିଏ ଲେନ୍‌ର ଆଗପଛ ତିନୋଟି ଘରର ପିଲା । ପିଲାଦିନରୁ ସାଥୀ । ଗୋଟିଏ ସ୍କୁଲରେ ପଢ଼ା, ଗୋଟିଏ କଲେଜରେ ମଧ୍ୟ । ଏକା ସାଙ୍ଗରେ ମଧ୍ୟ ବାଣୀବିହାରରୁ ସମାଜ କଲ୍ୟାଣ, ଇତିହାସ ଓ ରାଜନୀତି ବିଜ୍ଞାନରେ ସେବର୍ଷ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଛନ୍ତି, ଜୀବନର ଉପଯୋଗ ଭିନ୍ନ ଭିନ୍ନ ମାର୍ଗରେ କରି, ମଣିଷର ଚରିତ୍ରକୁ ଖିନ୍‌ଭିନ୍ କରି ବିଶ୍ଳେଷଣ କରିବା ପାଇଁ ।

Digitized by srujanika@gmail.com

ତିନିହେଁ ବିଭିନ୍ନ ତିନି ଧର୍ମର ସନ୍ତାନ । ନିଜ୍କକ ଧର୍ମୀୟସମ୍ପ୍ରଦାୟର ଶାସ୍ତ୍ରସମ୍ମତ ଚଳଣିରେ ଅଭ୍ୟସ୍ତ ଏହି ତିନି ବନ୍ଧୁ । 'ଜୀବରେ ପରମଦୟା' ଏହି ସ୍ୱାଭାବିକ ଶାସ୍ତ୍ରବାଣୀ ଏମାନଙ୍କ ଘରେ ନିଷ୍ଠାର ସହିତ ପାଳନ କରାଯାଏ । ଫଳରେ ଜନ୍ମରୁ କେହି ମାଛ ମାଂସର ସ୍ୱାଦ ମଧ୍ୟ ଚାଖି ନାହାନ୍ତି । ତେଣୁ କୌଣସି ପୂର୍ବପର୍ବାଣୀରେ କାହାରି ଘରେ କାହାର ନ ଖାଇବାର ହୁଏନା । ସବୁରି ପର୍ବରେ, ଏକହି ନ ହେଲେ ମଧ୍ୟ, ଏହି ତିନି ପରିବାର ଏକାଠି ହୁଅନ୍ତି । କୋଳାକୋଳି ହୁଅନ୍ତି ଆପଣା ଆପଣା ଭିତରେ ।

ଆଜି ଗଣେଶ ପୂଜା ଉପଲକ୍ଷେ ଶ୍ରଦ୍ଧାନନ୍ଦଙ୍କ ଘରେ ଏହି ତିନି ପରିବାରର ସମସ୍ତେ ଏକଜୁଟ । ଏକ ସାର୍ବଜନୀନ ପୁଷ୍ପାଞ୍ଜଳିର ବ୍ୟବସ୍ଥା ପଣ୍ଡିତ ରଥଶର୍ମାଙ୍କ ପୌରହିତ୍ୟରେ । ପୁଷ୍ପାଞ୍ଜଳି ନ ବଢ଼ିବାଯାଏ ଆହାର ନିଷେଧ । ତେଣୁ ତିନି ଘରର ଆଜି ସାମୂହିକ ଅନଶନ ଥିଲା ଅପରାହ୍ନ ପାଞ୍ଚଟା ପର୍ଯ୍ୟନ୍ତ । ଦିନର ଏହି ବେକାର ସମୟଟାକୁ କଟାଇବା ପାଇଁ ଜୋସେଫ, ଶ୍ରଦ୍ଧାନନ୍ଦର ବୁକ୍‌ସେଲ୍‌ଫରୁ 'ଲଜ୍ଜା' ଉପନ୍ୟାସଟାକୁ କାଢ଼ି, ଜାଭେଦକୁ ଦେଇଛି ପଢ଼ିବାକୁ । ୧୦୩ ପୃଷ୍ଠାର ଏହି ଛୋଟ ବହିଟିକୁ ଏକ ନିଃଶ୍ୱାସରେ ପଢ଼ିଦେଇଛି ଜାଭେଦ । ଆଉ ସେତିକିବେଳୁ ବଡ଼ ଗମ୍ଭୀର ହେଇଯାଉଛି । ସତେ ଯେପରି ଏ ସଂସାରରେ ଜନ୍ମ ନେବା ଏକ ଅଭିଶାପ । ଧର୍ମ ନାମରେ ମଣିଷକୁ ମଣିଷଠାରୁ ଦୂରେଇ ଦିଆଯାଉଅଛି । ମଣିଷ କ'ଣ ଏ ସଂସାରରେ, ଶ୍ରଦ୍ଧାନନ୍ଦ, ଜୋସେଫ ଓ ତା' ପରିବାରର ଲୋକଙ୍କ ଭଳି ନିଜର ଧର୍ମୀୟ ସତ୍ତା ବଜାୟ ରଖି ଆନନ୍ଦରେ ରହିପାରିବେ ନାହିଁ !!

ଜାଭେଦ୍‌ର ହଠାତ୍ ଏ ଗାମ୍ଭୀର୍ଯ୍ୟ !! ଶ୍ରଦ୍ଧାନନ୍ଦ ଖୁବ୍ ବ୍ୟସ୍ତ ହୋଇପଡ଼ିଲେ ଓ ପୁଷ୍ପାଞ୍ଜଳି ପରେ, କିଛି କିଛି ପିଠା ଭୋଗଡାଲାରୁ ଧରି, ଦୁଇବନ୍ଧୁଙ୍କୁ ନେଇ କୋଠା ଉପରକୁ ଚାଲିଗଲେ ।

କିଛି ସମୟର ନୀରବତା ପରେ ଜୋସେଫ କହିଲା "ଜାଭେଦ୍, ଆଜି ତ ପଢ଼ିଲୁ ତସଲିମାଙ୍କର ସେ 'ଲଜ୍ଜା' ଉପନ୍ୟାସଟା — ତୋର କ'ଣ ପ୍ରତିକ୍ରିୟା ?

ଜାଭେଦ, ଦହିଛେନାର ପୁରଦିଆ ଲଡୁପିଠାର ମଜାକୁ ଗଳାଧଃକରଣ କରି, ଗୋଟାଏ ଦୀର୍ଘ ପ୍ରଶ୍ୱାସ ନେଇ କହିଲା – 'ଏହା ଇତିହାସ, ରାଜନୀତି ଓ ସମାଜ ବିଜ୍ଞାନ ଚିନ୍ତାର ଏକ ଚମତ୍କାର ସମାବେଶ — — ।'

ମନେହେଉଥିଲା ଜାଭେଦ ଆଉ କିଛି କହିବାକୁ ଚାହୁଁଥିଲା ମାତ୍ର କାହିଁକି କେଜାଣି ଚାପି ରଖିଲା ।

Digitized by srujanika@gmail.com

ଶ୍ରଦ୍ଧାନନ୍ଦ କହିଲା—"ସେଟା ସମ୍ପୂର୍ଣ୍ଣ ଠିକ୍! ହେଲେ ତସଲିମା, ଜିନ୍ନାଙ୍କ ସମ୍ପର୍କରେ ଯେଉଁ ମତାମତଟା ଦେଇଛନ୍ତି ତାକୁ ଠିକ୍ କରି ପଢ଼ିଛୁଟି ?

ଲଜ୍ଜା ବହିର ପୃଷ୍ଠାଗୁଡ଼ିକୁ ଲେଉଟାଇ ପଢ଼ିବାକୁ ଆରମ୍ଭକଲେ ଶ୍ରଦ୍ଧାନନ୍ଦ "ମାଉଣ୍ଟବ୍ୟାଟେନ୍ ଯେତେବେଳେ ପଞ୍ଜାବ ଓ ବଙ୍ଗଳା ଭାଗ କରିବାର ପରିକଳ୍ପନା କରୁଥିଲେ ସେତେବେଳେ ଜିନ୍ନା କହିଥିଲେ—A Man is Panjabi or a Bengali before he is Hindu or Muslim. They share a common history, language, culture and economy. You must not divide them. You will cause endless bloodshed and trouble."

ଶ୍ରଦ୍ଧାନନ୍ଦଙ୍କ ପଢ଼ିବାର ଶେଷପଦଟି ସରୁ ନ ସରୁଣୁ ଅତ୍ୟନ୍ତ ସ୍ୱର୍ଣକାତର ଭାବରେ ଜାଭେଦ୍ ଚିତ୍କାର କରି ଉଠିଲା "ହିପୋକ୍ରିସି, ହିପୋକ୍ରିସି । ଜିନ୍ନାଙ୍କଠାରୁ ଆରମ୍ଭକରି ତସଲିମା ପର୍ଯ୍ୟନ୍ତ ସମସ୍ତେ ହିପୋକ୍ରିଟ୍ । ଧର୍ମ ତତ୍ତ୍ୱ ଉପରେ ମହାଭାରତର ଭୂଖଣ୍ଡକୁ ଭାଗ ଭାଗ କରି କ୍ଷମତାର ସମସ୍ତ ରଜ୍ଜୁକୁ ନିଜ ହାତରେ ରଖି ପ୍ରଶାସନିକ ରଥକୁ ଚଳାଇବାର ସ୍ୱପ୍ନ ଦେଖୁଥିବା ଓ ଏଭଳି ଏକ ମାର୍ଗକୁ ଉନ୍ମୁକ୍ତ କରିଥିବା ଜିନ୍ନାଙ୍କର, ସମ୍ପୂର୍ଣ୍ଣ ପଞ୍ଜାବ ଓ ବଙ୍ଗଳାକୁ ଗ୍ରାସ କରିଯିବା ପାଇଁ ଚମତ୍କାର ଭେଳିକି ସୃଷ୍ଟି କରୁଥିବା ଏ ଭାଷା । ଆହା କି ଦରଦ ଏ ଭୂଖଣ୍ଡର ଦୁଇଗୋଡ଼ିଆ ଜୀବମାନଙ୍କ ପ୍ରତି!! ଆଉ ଠିକ୍ ସେଇଭଳି କୌଣସି ଏକ ଦୁର୍ବଳ ମୁହୂର୍ତ୍ତର ଉତ୍ତେଜନାରେ ଲଜ୍ଜାର ରୂପ ଦେଇଥିବା ତସଲିମା, ଧର୍ମଭିତ୍ତିକ ରାଷ୍ଟ୍ର ଗଠନର ଭିତ୍ତିଭୂମି ପକାଇଥିବା ଜିନ୍ନାଙ୍କର ଏହି କୁମ୍ଭୀରକାନ୍ଦଣାକୁ ଉଦ୍ଧାର କରି, ଜିନ୍ନାଙ୍କ କାର୍ଯ୍ୟକୁ ସମର୍ଥନ କରି, ନିଜର ଅବଚେତନ ମନ ମଧ୍ୟସ୍ଥ ଧର୍ମାନ୍ଧତାକୁ କ'ଣ ସେ ପ୍ରକଟ କରି ନାହାନ୍ତି ?"

'ହା-ହା-ହା', ଏକ ମିଥୋଲୋଜିକାଲ ହସଟାଏ ହସିଦେଇ, ଜୋସେଫ କହିଲା "ଆରେ ତୁମେ ସବୁ ବୁଝିନାହଁ, ରାତାରାତି ନେତା ବନିଯିବାର ଏସବୁ ଏକ ଅଭିନବ ଚାଲ୍ । ନେତା ହେବାକୁ ହେଲେ ଜନସାଧାରଣଙ୍କର ଦୃଷ୍ଟି ତ' ଆକର୍ଷଣ କରିବାକୁ ହେବ କୌଣସି ଏକ ରେକର୍ଡ଼ ଭଙ୍ଗକରି । ତା'ପରେ ସାମ୍ବାଦିକ ସମ୍ମିଳନୀ, ଅଭ୍ୟର୍ଥନା ସଭା ଇତ୍ୟାଦି ଇତ୍ୟାଦି, ଯେଉଁ ମାଧ୍ୟମରେ କି ଜନସାଧାରଣଙ୍କ ଦାରିଦ୍ର୍ୟ ଓ ଯନ୍ତ୍ରଣା ସକଳକୁ ପୁଞ୍ଜିକରି, ସେମାନଙ୍କ ପାଇଁ ଦରଦର ଭାଷା ବୁଣି, ନିଜର ଅଭିଳାଷ ପୂରଣ କରିବାର ଖୋରାକ ଅମଳ କରିବାର ବାଟ ଥାଏ । ତେଣୁ ବିପ୍ଳବୀ ଲେଖକ, ଚପ୍‌ଷ୍ଟାର ହିରୋ, ବିଶ୍ୱ ସୁନ୍ଦରୀ, ଅର୍ଜ୍ଜୁନ ପୁରସ୍କାର ଭଳି କିଛି ଉପାଧି ଓ ପୁରସ୍କାରରେ ଭୂଷିତ ହେବାର ଆବଶ୍ୟକତା ରହିଛି । ତାହାହେଲେ ଅପ୍ରାପ୍ତ ବୟସରେ, ସମାଜ ସମ୍ପର୍କରେ କୌଣସି ଅଭିଜ୍ଞତା

Digitized by srujanika@gmail.com

ନ ଥାଇ ମଧ୍ୟ ଅଭିଜ୍ଞମାନଙ୍କୁ ଉପଦେଶ ଦେଇ ନେତୃତ୍ୱ ନେବାର ବାଟ ଫିଟି ପାରିବ । ଥରେ ନେତା ହୋଇଗଲେ, ଖାଦ୍ୟ ଅପମିଶ୍ରଣକାରୀ ମଧ୍ୟ, ଡାକ୍ତରମାନଙ୍କ ସଭାକୁ ନିମନ୍ତ୍ରିତ ହୋଇ, ସେବା-ମନ୍ତ୍ର ବିଷୟରେ ଭାଷଣ ବାଜି କରିପାରିବେ ।''

ଆଜିଭଳି ଏମିତି ଏକ ଦିନରେ, ଆରମ୍ଭରୁ ଆଲୋଚନାଟା ଏତେ ବେଶୀ ଇମୋସନାଲ୍ ହୋଇଯିବ ବୋଲି ଶ୍ରଦ୍ଧାନନ୍ଦ କଳ୍ପନା କରି ନ ଥିଲେ । ଅବଶ୍ୟ ଆମ ଜନତାର ଭାବନା, ଯାହାକି କେତେବେଳେ ହେଲେ କାହାକୁ ପ୍ରଭାବିତ କରିପାରି ନାହିଁ, ଏହା ସେହିଭଳି ଏକ ସ୍ୱତଃସ୍ଫୂର୍ତ୍ତ ଚିନ୍ତାର ପରିପ୍ରକାଶ । ଜଳଦଭରା ଆକାଶରେ ଚତୁର୍ଥୀ ଜ୍ୟୋତ୍ସ୍ନାର ପ୍ରତିଫଳିତ ସୁନ୍ଦର ଶୀତଳ ସନ୍ଧ୍ୟାର ପରିବେଶକୁ ଯେ ଏହି ମାନସିକ ଶୀତଳ ଯୁଦ୍ଧ ଉତ୍ତପ୍ତ କରିଦେବ, ଶ୍ରଦ୍ଧାନନ୍ଦ କେବେହେଲେ କଳ୍ପନା କରି ନ ଥିଲେ ।

ଏକବିଂଶ ଶତାବ୍ଦୀର ଦ୍ୱାରବନ୍ଧ ଉପରେ ଠିଆହୋଇ ପୃଥିବୀର ସବୁ ସ୍ଥାନରେ ଗଣତନ୍ତ୍ରର ମୁଖାପିନ୍ଧି, ଗଣକୁ ଲୁଣ୍ଠନ କରିବାର ଅଭିଳାଷକୁ ପୂରଣ କରିବା ପାଇଁ ଏହି ଅଭିନବ ପନ୍ଥା ସମ୍ପର୍କରେ ଜୋସେଫଙ୍କ ଖୋଲା ମନ୍ତବ୍ୟଟା ଏକ ଅପ୍ରିୟ ସତ୍ୟ ଭଳି ଶ୍ରଦ୍ଧାନନ୍ଦକୁ ଲାଗିଲା । ଜୋସେଫଙ୍କ ମନ୍ତବ୍ୟକୁ ଯଥାର୍ଥ ମନେ ନ କରିବାର କୌଣସି ଯୁକ୍ତି ସେ ପାଇଲା ନାହିଁ ।

ପ୍ରକୃତରେ ସେଇଆତ ଘଟଣା । କୌଣସି ପଦବୀ ବା ପୁରସ୍କାର ପାଇବାର ପୂର୍ବଦିନ ପର୍ଯ୍ୟନ୍ତ ଏକ ଅକିଞ୍ଚନ ହିସାବରେ ପରିଗଣିତ ହେଉଥିବା ଜଣେ ଲୋକ, ପଦବୀ ବା ପୁରସ୍କାର ପାଇବାର ପରେ ପରେ ସମ୍ବାଦପତ୍ରର ପ୍ରଥମ ପୃଷ୍ଠାର ହିରୋ । ତା'ପରେ ସାମ୍ବାଦିକ ସମ୍ମିଳନୀ ତଥା ଜନସମ୍ବର୍ଦ୍ଧନାରେ ଗଣ ଓ ତନ୍ତ୍ର ସମ୍ପର୍କରେ ସୁଦୀର୍ଘ ମନ୍ତବ୍ୟ ଓ ନିର୍ବାଚନ ଲଢ଼ିବାର ବାସନା, ଜୋସେଫଙ୍କ ମନ୍ତବ୍ୟକୁ ପ୍ରମାଣିତ କରୁଛି ।

''ରାଜନୀତିରେ ହିରୋ ବୋଲାଇବାକୁ ହେଲେ ଏହିଭଳି ଏକ ଚମତ୍କାରିତାକୁ ଆଗ ହାସଲ କରିବାର ଯେ ଆବଶ୍ୟକତା ରହିଛି, ତୋର ଏ କଥାରେ ମୁଁ ମଧ୍ୟ ସହମତ ।'' ଶ୍ରଦ୍ଧାନନ୍ଦ, ମନଭିତରେ ବହୁତ ତଉଲା ତଉଲି କରି କହିଲେ ।

'କ୍ୱାଇଟ୍ ଟ୍ରୁ', ଜାଭେଦ୍ କହିଲା । 'ପ୍ରଶାସନ ସହିତ କୌଣସି ସମ୍ପର୍କ ନ ଥିବା ବୃତ୍ତିକୁ ପାଥେୟ କରି ଚଳୁଥିବା ଲୋକ, କୌଣସି ଏକ ଅବାସ୍ତବ କଥାର ଭେଳିକି ସୃଷ୍ଟି କରି, ଗଣତାନ୍ତ୍ରିକ ପଦ୍ଧତିର ଦୁର୍ବଳ ସୂତ୍ରକୁ ଧରି ପ୍ରଶାସନର ଡୋର ଧରିବାକୁ କି ଆଗ୍ରହ !! ଗୋଟାଏ କଥା ଦେଖୁନାହଁ! ଯେହେତୁ ଦେଶର ଜନସଂଖ୍ୟାର ନବେ ପ୍ରତିଶତ ଅନଗ୍ରସର ଓ ପଛୁଆ ବର୍ଗର ଲୋକ, ତେଣୁ

Digitized by srujanika@gmail.com

ଏ ଦେଶ ଶାସନ କରିବାକୁ ସେହି ବର୍ଗର ଲୋକଙ୍କର ହିଁ ଅଧିକାର । ତେଣୁ ଶିକ୍ଷା ଓ ପ୍ରଶାସନ ସବୁ କ୍ଷେତ୍ରରେ ୮୦ ଶତାଂଶ ସ୍ଥାନ ସଂରକ୍ଷଣ ହେବା ଉଚିତ୍ । ନଚେତ୍ ଦେଶର ବା ରାଷ୍ଟ୍ରର ଉନ୍ନତି ହୋଇପାରିବ ନାହିଁ ଏବଂ ଏହି ସଂରକ୍ଷଣ ବ୍ୟବସ୍ଥା ଶିକ୍ଷା କ୍ଷେତ୍ରରେ ଛାତ୍ରମାନଙ୍କ ପ୍ରତି ମଧ୍ୟ ଲାଗୁ ହେବା ଉଚିତ୍ । କେବଳ ତଥାକଥିତ ନବେ ଶତାଂଶ ଅନଗ୍ରସର ପଛୁଆ ବର୍ଗର ଜନସାଧାରଣଙ୍କ ଏକ ସୂକ୍ଷ୍ମ ସେଣ୍ଟିମେଣ୍ଟ ଉପରେ ଏକ ବିଶେଷ ପ୍ରଭାବ ପକାଇ ସେମାନଙ୍କୁ ଆକୃଷ୍ଟ କରି, ଗଣତାନ୍ତ୍ରିକ ପଦ୍ଧତିରେ ପ୍ରଶାସନିକ ଡୋରିକୁ ହାତରେ ଧରିବାର ବାସନା ଛଡ଼ା ରାଷ୍ଟ୍ରପ୍ରୀତିର କେଉଁ ଉଦ୍ଦେଶ୍ୟ ପରିପୂରଣ କରୁଛି ଏହି ସ୍ଲୋଗାନ୍ ?

"ରାଷ୍ଟ୍ରର ମଙ୍ଗଳ ବା ଉନ୍ନତି ପାଇଁ ଯୋଗ୍ୟ ଲୋକଙ୍କର ଯେ ଆବଶ୍ୟକ ଏହା କ'ଣ ଏକ ଅନାବଶ୍ୟକ କଥା ? 'ରିଜର୍ଭେସନ ଅଫ୍ କୋଟା' ଥିଓରି, ଯୋଗ୍ୟ ଲୋକଙ୍କୁ ବାଦ ଦେଇ କମ୍ ଯୋଗ୍ୟ ବା କେତେକ କ୍ଷେତ୍ରରେ ସମ୍ପୂର୍ଣ୍ଣ ଅଯୋଗ୍ୟ ଲୋକଙ୍କୁ ଅଗ୍ରାଧିକାର ଦିଆଯିବାର ଏକ ପଦ୍ଧତି ବୋଲି ଧରିନେବା କ'ଣ ପ୍ରକୃତ କଥା ନୁହେଁ ? ଯେଉଁ ରାଷ୍ଟ୍ର ଶିକ୍ଷାଠାରୁ ଆରମ୍ଭ କରି ପ୍ରଶାସନ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ଶତକଡ଼ା ୮୦ ଭାଗ ଏହି କମ୍ ଯୋଗ୍ୟ ଏବଂ କ୍ଷେତ୍ର ବିଶେଷରେ ଅଯୋଗ୍ୟ ଲୋକଙ୍କ ଦ୍ୱାରା ପରିଚାଳିତ ହେବ ସେ ରାଷ୍ଟ୍ରର ଭବିଷ୍ୟତ ଉନ୍ନତ ଓ ମଙ୍ଗଳକର ହେବତ ? ଏକ ଜନମଙ୍ଗଳ ରାଷ୍ଟ୍ରରେ ଯୋଗ୍ୟମାନେ ମଧ୍ୟ ଅଧ୍ୟୟନରୁ ବଞ୍ଚିତ ହେବେ ଏହି ଚିନ୍ତା ଯଦି କାହାରି ମନରେ ଆସୁଥାଏ ତାହାହେଲେ ସେ ପ୍ରକୃତରେ ରାଷ୍ଟ୍ରବନ୍ଧୁ ନା ରାଷ୍ଟ୍ରଦ୍ରୋହୀ ?" ଜାଭେଦ ବେଶ୍ ଉତ୍ତେଜିତ ହୋଇପଡ଼ିଲେ ।

ଜୋସେଫ ମଧ୍ୟ ସମ୍ଭାଳି ପାରିଲା ନାହିଁ ନିଜର ଉତ୍ତେଜନାକୁ । କହି ଉଠିଲା—"ଏ ଲୋକଗୁଡ଼ାକ ଇତିହାସରୁ ମଧ୍ୟ କିଛି ଶିଖନ୍ତି ନାହିଁ । ମଣ୍ଟେଗୁ ଚେମ୍ସଫୋର୍ଡ଼ ତାଙ୍କ ରଚିତ ପୁସ୍ତକ 'An Indian Diary' ରେ ଗାନ୍ଧୀଙ୍କ ସମ୍ପର୍କରେ ଲେଖିଛନ୍ତି 'ସେ ଜଣେ ସମାଜ ସଂସ୍କାରକ । କେଉଁଠି କ'ଣ ସାମାଜିକ ତ୍ରୁଟିବିଚ୍ୟୁତି ରହିଛି ସେ ତାହାର ଅପସାରଣ ନିମିତ୍ତ ବେଶ୍ ନିଷ୍ଠାର ସହିତ ଉଦ୍ୟମ କରନ୍ତି, ନିଜର କିଛି ଫାଇଦା ଲାଗି ନୁହେଁ । ଦେଶବାସୀଙ୍କ ଅବସ୍ଥାର ଉନ୍ନତି ପାଇଁ ସେ ସେବକ ହୋଇଛନ୍ତି । ତାଙ୍କର ପୋଷାକ ଜଣେ କୁଲିର ପୋଷାକ ସଦୃଶ । ନିଜର ସୁଖକୁ ସେ ପରିହାର କରିଛନ୍ତି । କହିବାକୁ ଗଲେ ସେ ପବନ ପିଇ ବଞ୍ଚନ୍ତି ଭବିଷ୍ୟତରେ ସୁଦିନ ଆସିବାର ଆଶା ରଖି ।' ଆଉ ଜବାହରଲାଲଙ୍କ ସମ୍ପର୍କରେ ତ' ଶୁଣିଥିବ । ପ୍ରାକ୍ ସ୍ୱାଧୀନତା କାଳରେ ସେ ବେଳେ ବେଳେ ଭୂଇଁ ଉପରେ ଶୋଇ ଯାଉଥିଲେ, ତୂଳିତଳ ଶଯ୍ୟା ଛାଡ଼ି,

Digitized by srujanika@gmail.com

କେବଳ ଦରିଦ୍ରର କଷ୍ଟ କିପରି ତାହା ଅନୁଭବ କରିବା ପାଇଁ । ଆଉ ବର୍ତ୍ତମାନ ? ଯେଉଁମାନେ ସମାଜବାଦ, ଦାରିଦ୍ର୍ୟ ଦୂରୀକରଣ, ସମାଜର ପଛୁଆ ବର୍ଗଙ୍କ ପାଇଁ ସ୍ଲୋଗାନ ଦେଇ ଭୋଟ ଲଢ଼େଇରେ ଜିଣିଲେ ସବୁ କରିଦେବେ ବୋଲି କହୁଛନ୍ତି; ସେମାନେ କିପରି ଚଳନ୍ତି ?''

ଜାଭେଦ୍ କଥା ମଝିରେ ନିଜକୁ ସମ୍ଭାଳି ନ ପାରି ପ୍ରଶ୍ନ କଲେ ''ସେମାନଙ୍କ ମଧ୍ୟରୁ ଯେଉଁମାନେ ତାଙ୍କ ପୌରୁଷର ସ୍ମାରକୀ ସଦୃଶ ଦାଢ଼ି ରଖିଛନ୍ତି, ତାକୁ ଟ୍ରିମିଂ କରିବାକୁ କେତେ ପଇସା ଖର୍ଚ୍ଚ କରିଥାନ୍ତି ? ଦରିଦ୍ର ଜାତିଭାଇଙ୍କ ପାଇଁ ବିପ୍ଳବର ଆହ୍ୱାନ ଦେଉଥିବା ନେତାମାନେ ନିଜର ଯାବତୀୟ ସମ୍ଭୋଗ ପାଇଁ କେତେ ଖର୍ଚ୍ଚ କରୁଛନ୍ତି ? ମହାତ୍ମା ଗାନ୍ଧୀଙ୍କର କ'ଣ ସେ ସମ୍ବଳ ନ ଥିଲା ?''

ଶ୍ରଦ୍ଧାନନ୍ଦ ପରିହାସ ଛଳରେ କହିଲେ । ''ଜୋସେଫ କ'ଣ କହିଲା ଶୁଣିଲୁ ନାହିଁ କି ? ଗାନ୍ଧୀ ମହାଶୟ କୁଲିର ପୋଷାକ ପିନ୍ଧୁଥିଲେ, ପବନ ପିଇ ବଞ୍ଚୁଥିଲେ ଭବିଷ୍ୟତର ସୁଦିନ ଆସିବାର ଆଶା ରଖି । କିନ୍ତୁ ଏବକାର ନେତାଏ ଜାଣନ୍ତି, ତାଙ୍କ ନୀତିରେ ଦେଶ ଚାଲିଲେ, ଭବିଷ୍ୟତରେ ସେଦିନ ଆସିବା ସୁଦୂର ପରାହତ ହେବ । ସୁଦିନ ଆସିବା ଆଗରୁ, ହୁଏତ ତାଙ୍କରି ବାହୁଛାୟାରେ ଆଶ୍ରିତ କୌଣସି ଆତତାୟୀକର୍ତ୍ତୃକ ତାଙ୍କର ସବୁ ଆଶା ଧୂଳିସାତ୍ ହୋଇଯାଇପାରେ । ତେଣୁ ଯାବତ୍ ଜୀବେତ୍ ସୁଖଂ ଜୀବେତ୍'' ।

ଜାଭେଦ୍ କହିଲେ – ''ଛାଡ଼ିଗଲୁ ଛାଡ଼ିଗଲୁ ପୂର୍ବପାଦଟି । 'ଋଣଂ କୃତ୍ୱା ଘୃତଂ ପୀବେତ୍' । ସେତେବେଳେ ସିନା ମହାଜନମାନଙ୍କ ଠାରୁ ଋଣ ମିଳୁଥିଲା ତେଣୁ ଋଣ ଗ୍ରହୀତାର ଭବିଷ୍ୟତ ଅନ୍ଧକାର ଥିଲା । ଏବେ ତ ରାଷ୍ଟ୍ରାୟତ୍ତ ବ୍ୟାଙ୍କରୁ ଋଣ ସୁବିଧାରେ ମିଳୁଛି । ଉପଯୋଗ କିପରି ହେଉଛି ତା'ର ହିସାବ ବା ରଖୁଛି କିଏ ? ହିସାବ ରଖିବାର ବ୍ୟବସ୍ଥା ଥିଲେ ମଧ୍ୟ, ରଖିବାରେ ଲାଭ କ'ଣ ? ସବୁ ତ ରାଷ୍ଟ୍ରାୟତ୍ତ । ରାଷ୍ଟ୍ର ଚାହିଁଲେ ସବୁ ଋଣ ଛାଡ଼ ମଧ୍ୟ କରାଯାଇପାରେ ।''

ଶ୍ରଦ୍ଧାନନ୍ଦ କହିଲେ ''ଏସବୁ ଗଣତନ୍ତ୍ରର ଦାନ ରାଷ୍ଟ୍ରର ପୁଷ୍ଟି ପାଇଁ । ରାଷ୍ଟ୍ର ସମାଜକୁ ନେଇ, ସମାଜ ବ୍ୟକ୍ତିକୁ ନେଇ । ତେଣୁ ବ୍ୟକ୍ତିର ଉନ୍ନତିରେ ସମାଜର ଉନ୍ନତି । ସମାଜର ଉନ୍ନତିରେ ରାଷ୍ଟ୍ରର ଉନ୍ନତି ।''

''ସମାଜ କହ ନାହିଁ, କହ ସମ୍ପ୍ରଦାୟ'' ଜାଭେଦ୍ କହିଲା । ''ବ୍ୟକ୍ତିକୁ ନେଇ ସମ୍ପ୍ରଦାୟ, ସମ୍ପ୍ରଦାୟକୁ ନେଇ ରାଷ୍ଟ୍ର । ସମ୍ପ୍ରଦାୟର ବିକାଶ, ଉନ୍ନତି ନ ଘଟିଲେ ରାଷ୍ଟ୍ରର ବିକାଶ କିପରି ସମ୍ଭବ ? ଏହା ହିଁ ହେଉଛି ଗଣତନ୍ତ୍ରର ମୂଳଭିତ୍ତି । ସୁତରାଂ ଏକ ସମ୍ପ୍ରଦାୟର ଉନ୍ନତି କେବଳ ଅନ୍ୟ ସମ୍ପ୍ରଦାୟର ଅଧୋଗତି ବା

Digitized by srujanika@gmail.com

ବିଲୁପ୍ତିରେ । ତୁମକୁ ଗୋଟାଏ ଦୃଷ୍ଟାନ୍ତ ଦେଉଛି । ଆଦିବାସୀ ସମ୍ପ୍ରଦାୟଙ୍କ ଅବନତିର କାରଣ ହେଉଛି ମଦ୍ୟପାନ । ସୁତରାଂ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ମଦ ନିଷେଧ ସଙ୍ଗେ ସଙ୍ଗେ ଅଣଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ବହୁଳ ବିଲାତି ମଦ ଦୋକାନ ଖୋଲିବା ନୀତି, ଆଦିବାସୀଙ୍କ ଉନ୍ନତିର ଗତି ଦ୍ରୁତତର କରିବା ପାଇଁ ନିଶ୍ଚୟ । ଆଦିବାସୀମାନେ ମଦ୍ୟପାନ ନ କରି ସ୍ୱଚ୍ଛଳ ହେବା ସଙ୍ଗେ ସଙ୍ଗେ ଅଣଆଦିବାସୀମାନେ ମଦ୍ୟପାନର ସୁବିଧା ପାଇ ଆର୍ଥିକ ଅନଟନ ମଧ୍ୟକୁ ଯିବେ । ତେଣୁ ଆଦିବାସୀ ସମ୍ପ୍ରଦାୟଙ୍କ ଆର୍ଥିକ ମାନଦଣ୍ଡ ଅଣଆଦିବାସୀ ସମ୍ପ୍ରଦାୟର ଲୋକଙ୍କ ତୁଳନାରେ ନିଶ୍ଚିତ ଭାବରେ ବହୁଗୁଣିତ ହେବ । ସେଥି ସଙ୍ଗେ ସଙ୍ଗେ ସରକାରଙ୍କର ରାଜସ୍ୱ ମଧ୍ୟ ବୃଦ୍ଧି ଘଟିବ । ପଛୁଆ ବର୍ଗଙ୍କ ଉନ୍ନତି ପାଇଁ ସ୍ଲୋଗାନ ପରିପ୍ରେକ୍ଷୀରେ ତ ପୁଣି କାର୍ଯ୍ୟ ହେବା ଦରକାର ।

"ଆଚ୍ଛା କହତ ଦେଖି, ତୁ'ତ ଇତିହାସର ଛାତ୍ର । ରାଜତନ୍ତ୍ର ଓ ସାମ୍ରାଜ୍ୟବାଦର ଶାସନରେ ସାମ୍ପ୍ରଦାୟିକ ଦଙ୍ଗା ବେଶି ହେଉଥିଲା ନା ଗଣତନ୍ତ୍ର ଶାସନରେ ବେଶି ହେଉଛି ? ସେ ସମୟର ଗଣହତ୍ୟା ଲୁଣ୍ଠନ ପାଇଁ ଆଉ ବର୍ତ୍ତମାନର ହତ୍ୟା ? ସେତେବେଳର ହତ୍ୟାରେ ରାଜାର ଲାଭ । ଏବଂ ସେତେବେଳେ ରାଜା ହିଁ ଥିଲା ରାଷ୍ଟ୍ରର ପ୍ରତୀକ, ତେଣୁ ତା'ରି ଲାଭକୁ ରାଷ୍ଟ୍ରର ଲାଭରେ ଗଣା ହେଉଥିଲା । ଆଉ ବର୍ତ୍ତମାନର ଲାଭ ସମ୍ପ୍ରଦାୟର, ନେତାଙ୍କର ନା ରାଷ୍ଟ୍ରର ?"

"ରାଜତନ୍ତ୍ର ବେଳେ ତ ଦୁରନ୍ତ ମୋଗଲ ରାଜପ୍ରାସାଦ ମଧ୍ୟରେ ତୁଳସୀ ପୂଜା ପାଉଥିଲେ । ରାଜପ୍ରାସାଦର ଗାତ୍ରରେ, ଶ୍ରୀକୃଷ୍ଣଙ୍କ ଚିତ୍ର ତଳେ 'ତୁମ ଦାସକୁ ତୁମେ ଦରିଦ୍ରତର କର । କାରଣ ଦରିଦ୍ର ହିଁ ତୁମକୁ ନିତ୍ୟ ସ୍ମରଣ କରେ' ଭକ୍ତ ସୁଦାମାଙ୍କ ଉକ୍ତି ଉଦ୍ଧାର କରାଯାଇଛି । ଆଉ ଏବେ ଗଣତନ୍ତ୍ରର ଶାସନ ଚାଲୁଥିଲାବେଳେ ଗୋଟିଏ ସମ୍ପ୍ରଦାୟର ମେଢ଼ ବା ତାଜିଆ ଗଲାବେଳେ ରକ୍ତାକ୍ତ ସମର । ଏହା ହିଁ ଗଣତନ୍ତ୍ର । ଏହା ହିଁ ବର୍ତ୍ତମାନ ରାଷ୍ଟ୍ରକୁ ଗଠନ କରୁଥିବା ତୋର ସମାଜ ଓ ମୋର ସମ୍ପ୍ରଦାୟର ଦେଶବାସୀଙ୍କୁ ଦାନ ।"

"ବିଧବା ବ୍ରାହ୍ମଣୀର ସୁବେଦାର କର୍ତ୍ତୃକ ଅପହରଣ କାହିଁକି ସେବେଳେ ତ ସାମ୍ପ୍ରଦାୟିକ ରଣାଙ୍ଗନ ସୃଷ୍ଟି କରି ନ ଥିଲା ? ଯଦି ଅତୀତରେ ଯୁଦ୍ଧଖୋର ଲୁଣ୍ଠନକାରୀଙ୍କ ଅତ୍ୟାଚାରରେ ସକ୍ରିୟ ମନ୍ଦିର ଉପରେ ବିନା ପ୍ରତିକ୍ରିୟାରେ ମସଜିଦ୍ ତିଆରି ହୋଇପାରୁଥିଲା, ଏବେ ପରିତ୍ୟକ୍ତ, ଅବ୍ୟବହୃତ ମସଜିଦ୍ ସ୍ଥାନରେ ମନ୍ଦିର ତୋଳା ହେବାରେ ନେତାମାନଙ୍କର ଏତେ ବିରୋଧ କାହିଁକି ? ପୁନଶ୍ଚ ଶହ ଶହ ବର୍ଷ ଧରି ବିନା ମନ୍ଦିରରେ ଯଦି ପ୍ରଭୁ ରାମଚନ୍ଦ୍ରଙ୍କର ସେଠାରେ ପୂଜା

Digitized by srujanika@gmail.com

ହୋଇପାରୁଥିଲା ଏବେ କେତେକ ସମ୍ପ୍ରଦାୟଙ୍କ ସେଣ୍ଟିମେଣ୍ଟକୁ ଚୋଳିଧରିଥିବା ଏହି ପରିତ୍ୟକ୍ତ ମସ୍‌ଜିଦ୍‌କୁ ଭାଙ୍ଗି ତହିଁ ଉପରେ ମନ୍ଦିର ନିର୍ମାଣରେ ଲାଭ କ'ଣ ? ପୂଜା କ'ଣ ମନ୍ଦିର ମସ୍‌ଜିଦ୍‌ରେ କଲେ ହିଁ ମୁକ୍ତି ମିଳିବ ? ଭାରତ ବର୍ଷର ଉନ୍ନତ ସଂସ୍କୃତି କ'ଣ ଏହି ମନ୍ଦିରରୁ ଜାତ ନା ଜନଶୂନ୍ୟ ଅରଣ୍ୟ ଓ ପର୍ବତ ଗୁହାରୁ ସମ୍ଭୂତ ? ଏ ସବୁର ସୃଷ୍ଟିକର୍ତ୍ତା କିଏ ଏବଂ ଏ ଦେଶର ଗଣତନ୍ତ୍ରରେ ଏମାନଙ୍କର ସ୍ଥାନ କେଉଁଠି ? ଏମାନଙ୍କ କାର୍ଯ୍ୟ ରାଷ୍ଟ୍ର ପାଇଁ କେଉଁ ପରିପ୍ରେକ୍ଷୀରେ ଗ୍ରହଣ କରାଯିବ ? ସବୁ, ସବୁ ହିପୋକ୍ରିସି ! ଏହି ହିପୋକ୍ରିସି ହିଁ ଗଣତନ୍ତ୍ରର ଦାନ ।''

ଶ୍ରଦ୍ଧାନନ୍ଦ ଖୁବ୍ ଗମ୍ଭୀର ଭାବରେ କହିଲେ ''କଥାଟା ନିତାନ୍ତ ସତ୍ୟ । ଆମ ସମସ୍ତଙ୍କର ବିଚାର ବିଭ୍ରାଟ ଘଟିଲାଣି ।''

ଏହିସବୁ ଆଲୋଚନା ଭିତରେ ଶ୍ରଦ୍ଧାନନ୍ଦଙ୍କ ମା 'ମୁକ୍ତି' ଯେ କେତେବେଳୁ ଆସି ଚୁପ୍‌ଚାପ୍ ଏମାନଙ୍କର ଆଲୋଚନା ଶୁଣୁ ଶୁଣୁ ଆସିବାର ଉଦ୍ଦେଶ୍ୟ ଭୁଲି ଯାଇଛନ୍ତି, ତାହା କାହାକୁ ଜଣା ନାହିଁ । ପିଲାମାନଙ୍କର କଥା ସବୁ ଶୁଣୁ ଶୁଣୁ ମୁକ୍ତିଦେବୀଙ୍କ ଆଖିରୁ କେବଳ କେତେ ବୁନ୍ଦା ଲୁହ ଗଡ଼ି ଆସୁଥିଲା । ଆର୍ଦ୍ରକଣ୍ଠରେ ଆଖି ପୋଛୁ ପୋଛୁ ଆରମ୍ଭ କଲେ—

''ତୁମ ତିନି ଭାଇଙ୍କ ଭିତରେ ନା ଏ ସାମ୍ପ୍ରଦାୟିକତା ଅଛି ନା ଆସନ ଓ କ୍ଷମତାର ଲାଳସା ରହିଛି ? ତୁମେ ତିନିହେଁ ସମାଜ କଲ୍ୟାଣ, ଇତିହାସ ଓ ରାଜନୀତିର ଛାତ୍ର । ସେହି ବିଷୟ ସବୁରେ ବ୍ୟୁତ୍ପତ୍ତି ଲାଭ କରିଛ । ଇତିହାସରୁ ତୁମେ ଯଥେଷ୍ଟ ଶିଖିଛ ଦେଶ ପାଇଁ କ୍ଷତି କେଉଁମାନେ କରିଛନ୍ତି ଓ ପ୍ରକୃତରେ ରାଷ୍ଟ୍ରଦ୍ରୋହୀ କେଉଁମାନେ; ସମାଜର କଲ୍ୟାଣ ବୋଇଲେ କ'ଣ ବୁଝାଏ ଏବଂ ସମାଜର ସାମୂହିକ କଲ୍ୟାଣ ପାଇଁ କାହାର ଆବଶ୍ୟକ ରହିଛି । ସଂପ୍ରୀତି ଓ ସଦ୍‌ଭାବନା ନ ରହିଲେ ସମାଜର କଲ୍ୟାଣ ଆଶା କରିବା ବୃଥା । ଇତିହାସରୁ କେଉଁ କାର୍ଯ୍ୟ ସମାଜ କଲ୍ୟାଣର ପରିପନ୍ଥୀ ତାକୁଇ ତ ଖୋଜି ବାହାର କରି ନୂତନ ଢାଞ୍ଚାରେ ରାଜନୀତିକୁ ପରିପୁଷ୍ଟ କରିବ ତୁମେମାନେ । ବ୍ୟକ୍ତିଗତ ସ୍ୱାର୍ଥର ତୋଷଣ ପାଇଁ, ଶିକ୍ଷାର ଅପପ୍ରୟୋଗ କରି ଅଶିକ୍ଷିତ ଜନସାଧାରଣଙ୍କ ଦୁର୍ବଳ ମୁହୂର୍ତ୍ତର ସୁଯୋଗ ନେଇ ଗଣତନ୍ତ୍ରର ଅନ୍ଧ ଭୋଟ ନୀତି ନିୟମ ଭିତରେ ତୁମେସବୁ ନିଜ ଜୀବନ ଗଢ଼ିବ, ଏହା, ଶ୍ରମଝାଳ ତୁଣ୍ଡରେ ମାରି ତୁମମାନଙ୍କୁ ଯୋଗ୍ୟ କରିବାର ସ୍ୱପ୍ନ ଆମର ନୁହେଁ । ଆମର ସ୍ୱପ୍ନ ହେଉଛି ରାଷ୍ଟ୍ରର ହିତ ପାଇଁ ତୁମ ଶିକ୍ଷାର ଉପଯୋଗ । ଇତିହାସ ପୃଷ୍ଠାରୁ ଆଜି ନୂତନ କରି ଖୋଜି

Digitized by srujanika@gmail.com

ବାହାର କର, ଶଙ୍କରାଚାର୍ଯ୍ୟ, ଚାଣକ୍ୟ, ଗୁରୁ ଗୋବିନ୍ଦ ସିଂହ, ମହାତ୍ମା ଗାନ୍ଧୀଙ୍କୁ । ରାଜନୀତିର ସୂତ୍ରରେ ଗୁନ୍ଥିନିଅ ସଂପ୍ରୀତି ଓ ସଦ୍ଭାବନାର ଫୁଲକୁ, ସମାଜର କଲ୍ୟାଣ ପାଇଁ । ସଂଯୋଗରେ ସୃଷ୍ଟି, ବିଯୋଗରେ ନଷ୍ଟି । ଏକରେ ଏକ ମିଶାଇଲେ ହୁଏ ଦୁଇ; ମାତ୍ର ଏକରୁ ଏକ ଗଲେ ହୁଏ ଶୂନ୍ୟ । ଆଜି ଏହି ପବିତ୍ର ଦିନରେ ଆମ ସମାଜରେ ତୁମେ ତିନି ମୂର୍ତ୍ତିମନ୍ତ ଯୁବକ ଏକ ନୂତନ ଯୁଗର ଶ୍ରୀଗଣେଶ କର । ଚାଲ ଖାଇବ ଚାଲ । ଖାଲି ବସି ତୁଛାଟାରେ ମୁଣ୍ଡ ଗରମ କରୁଛ କିଛି କାମ ନ କରି ।''

ମଥାନତକରି ମା ମୁକ୍ତିଙ୍କ କଥାକୁ ଶିରୋଧାର୍ଯ୍ୟ କରି ଓହ୍ଲେଇଗଲେ ତଳ ମହଲାର ପଂକ୍ତି ଭୋଜନ ପାଖକୁ ତିନି ବନ୍ଧୁ ।

* ଡା: ଅଭିନ୍ନ ଚନ୍ଦ୍ର ହୋମିଓପାଥି କଲେଜର ମୁଖପତ୍ର – ୧୯୯୪

Digitized by srujanika@gmail.com